NAI AU MACCHA
HAMSA O SARASA
( Poems in Oriya )
**By Sarat Chandra Pradhan**

**Price Rs : 6**


ପ୍ରକାଶକ :
ଶ୍ରୀ ଗୋବିନ୍ଦଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ,
କଟକ

ପ୍ରଥମ ସଂସ୍କରଣ : ୧୯୭୩

ପ୍ରଚ୍ଛଦପଟ ଶିଳ୍ପୀ :
ଶ୍ରୀ ଅସିତ୍ ମୁଖର୍ଜି

ମୂଲ୍ୟ : ଛଅ ଟଙ୍କା ମାତ୍ର

ମୁଦ୍ରାକର :
ଗୁରୁପ୍ରସନ୍ନ ପ୍ରେସ
କଟକ—୧

## ଭୂମିକା

ଆଧୁନିକ ଓଡ଼ିଆ କବିତା ସଂପ୍ରତି ରସୋତ୍ତୀର୍ଣ୍ଣ। ପଛରେ ତାର ଆଲୋଚନା ଓ ପ୍ରତି ଆଲୋଚନାର କେତେ ପାହାଚ। ପୁଣି ଏହା ଦୁର୍ବୋଧ, ଛନ୍ଦହୀନ ଓ ପରମ୍ପରାଚ୍ୟୁତ—ଏମିତି କେତେ ଟିପ୍ପଣୀ। ତଥାପି କବିତାର ଜୟଯାତ୍ରା ଆମର ଦୃଷ୍ଟି ଆକର୍ଷଣ କରେ। ଅଧୁନାତନ ମନୁଷ୍ୟର ପ୍ରଜ୍ଞାଦୀପ୍ତ ମନ ଓ ମନନକୁ ନେଇ ଏହା ବିକଶିତ; ତହିଁରେ ନାନା ପରୀକ୍ଷା ଚାଲିଛି। ବେଳେ ବେଳେ ଏହା ବୌଦ୍ଧିକତା ଦ୍ୱାରା ସମୃଦ୍ଧ; ପୁଣି ବେଳେ ବେଳେ ଯୁଗଯନ୍ତ୍ରଣା ଓ ଆତ୍ମ-ଜିଜ୍ଞାସାରେ ମେଦୁରିତ। ଏବେ ପୁଣି କାବ୍ୟଚେତନା ଋଜୁ ଓ ଶାଣିତ ହେବାକୁ ଆରମ୍ଭ କଲାଣି। ଲୋକକଥା, ନାନା ବାୟୁାଗୀତ ଓ ପୁରାଣର କେତେ ହଜିଲା ଚିତ୍ରକଳ୍ପ କବିତାରେ ନୂଆଦାନା ବାନ୍ଧିଲାଣି। ସେଗୁଡ଼ିକ ମଧ୍ୟ ଆଧୁନିକ କାବ୍ୟ ଚେତନାର ମାଧ୍ୟମ। ବସ୍ତୁତଃ ଅଧୁନା କାବ୍ୟଜଗତ ବିଚିତ୍ର ଓ ଅନୁପମ ସମ୍ଭାରରେ ଭରି।

'ନଈ ଆଉ ମାଛ, ହଂସ ଓ ସାରସ' ମୋର ପ୍ରଥମ ପ୍ରକାଶିତ କାବ୍ୟଗ୍ରନ୍ଥ। ଏଥିରେ ଋଗବେଦରୁ ଆରମ୍ଭ କରି ଲୋକଗୀତ, ନାନା ବାୟୁାଗୀତ ଓ ଲୋକ ସଂସ୍କୃତିରୁ ଚିତ୍ରକଳ୍ପମାନ ଗୃହୀତ ହୋଇଛି। ଏଗୁଡ଼ିକ ମାଧ୍ୟମରେ ଆଧୁନିକ କାବ୍ୟଚେତନାକୁ ରୂପଦେବାକୁ ଚେଷ୍ଟା କରାଯାଇଛି। ଏଥିରେ ଯେଉଁ କାବ୍ୟିକ ପରୀକ୍ଷା କରାଯାଇଛି, ତାହା କେତେଦୂର ସାର୍ଥକ, ସୁଧୀବର୍ଗ ବିଚାର କରିବେ। ଏ ପୁସ୍ତକ ନିହିତ ବିଭିନ୍ନ କବିତା ଝଙ୍କାର, ପ୍ରଜ୍ଞା, କବିତା, ଉଗର, ଦିଗନ୍ତ

ଜୀବନରଙ୍ଗ ଆଦି ପତ୍ରିକାରେ ପୂର୍ବରୁ ପ୍ରକାଶିତ ହୋଇଥିଲା । କେତେକ ଆକାଶବାଣୀ, କଟକ ଦ୍ୱାରା ମଧ୍ୟ ପ୍ରଚାରିତ ହୋଇଛି । ଏ ଅବସରରେ ଉକ୍ତ ସଂସ୍ଥା ଓ ପତ୍ରପତ୍ରିକାର ସଂପାଦକମାନଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ପରିଶେଷରେ ଏ କବିତା ଗ୍ରନ୍ଥର ପ୍ରକାଶ ଦାୟିତ୍ୱ ଶ୍ରୀଯୁକ୍ତ ଗୋବର୍ଦ୍ଧନଚରଣ ପାତ୍ର ବହନ କରିଥିବାରୁ ଲେଖକ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଇତି ।

ଅକ୍ଷୟ ତୃତୀୟା                ଶରତ୍‌ଚନ୍ଦ୍ର ପ୍ରଧାନ
୫ । ୫ । ୭୩

---

# ସୂଚୀ

---

# ସକାଳର ସ୍ତବ

ଭଗବାନ ହୁଅ ଥରେ
ମୀନ ଅବତାର
ସମୁଦ୍ରର ନୀଳ ଲହରୀରେ
ଭାସିଯାଉ ମୋ ଦେହର
ଚକ୍ ଚକ୍ କାନ୍ତି ଆଜ
ମୋ ଆଖିର ନୀଳ ଜ୍ୟୋତି
ଅନନ୍ତ କାଳର ।

ଏ ଦେହଟା ଖେଳିବୁଲୁ
କାରୁଣ୍ୟ ଜଳରେ,
ପ୍ରଳୟ ପ୍ରୟୋଧି ଆଜ
ବଟ ପତ୍ର ପରେ
ଗୁହ୍ଲାଁ ଦେଲେ ନୀଳ ଜଳ
ଖାଲି ନୀଳ ଜଳ,

ସଜଳ ନୟନ ଆଉ
ସାମୁଦ୍ରିକ ଖେଳ ।

ଦେଖୁଥିବ ବାରମ୍ବାର
ହେ ଚିର ସୁନ୍ଦର,
ଭିଜାଇ ମୋ ଆଖିପତା
ଲୁଣି ହାଓ୍ୱା କେତେ ସମୁଦ୍ରର ।

ଯଦିବା ଆସିବ ତେଜ
ଅନନ୍ତ କାଳର,
ଗୁଡ଼ିକଙ୍କ ବେଣୀଚେର
ବାଲି ହରିଣର;

ହେ ଦେବତା ଦିଅ ମୋତେ
ଆଲୁଅ ଅନ୍ଧାର
ମୋ ଆଖିରେ ମାଳ ଜ୍ୟୋତି
ସପ୍ତ ପୁରୁଷର ।
ନଷ୍ଟପଠା ବାଲିକୁଦ
ମ୍ଳାନ ଦ୍ୱି ପ୍ରହର
ମୋ ଦେହର ପାର୍କ ଆଉ
ଝାଉଁ ଜଙ୍ଗଲର,
ସୁଅରେ ନାଚଇ ଯଦି
ଅବୋଧ ପବନ
ଦ୍ୱାପରର କୃଷ୍ଣ ଏବଂ
ମୋ ମନର ଜହ୍ନ ।

କୋଠରିରେ କେତେ ସ୍ୱପ୍ନ
କେତେ ଅପରାହ୍ନ
ମହାଂଗନ୍ଧା ହସ ଆଉ
ମୋ ପିଙ୍ଗଳା ମନ ।

ଏ ସବୁ ଝ ହଙ୍କେ ଝନ୍ନେ
        ସୁନା ଘୁଁରୁଆରେ,
ନୋଳଆଣୀ ନୂଥ ତଳେ
        ସାତ ତାଳ ଜଳେ ।

ସେତେବେଳେ, ହେ ଦେବତା
        ଆହେ ଚକାଡୋଳା
ଦେହେ ମୋ ବଜୁଳି ଖେଳେ
        ମୁଁ କି ସବେ ଭୋଳା ?
ମୁଁ ପାଲଟେ ପୋଷାମାଛ
        ଆକାଶ ତାରା ।

ତୁମ ଗଢ଼ା ରାଧାଚନ୍ଦ
        କେଡ଼େ ସତେ ଉଇ,
କଣପୁର ଘଠ ଏବଂ
        କଣ୍ଡପୁର ମାଛ ।

ଡାକେ ପୁଣି କେତେବେଳେ
        ନରେଲା ପ୍ରହରେ
ଚେଙ୍କାତୋଳ, ମାଳାଦ୍ରି ବା
        କାମ୍ୟକ ବନରେ ।

ଶାମ୍ବର ଏ ନାରୀ ବେଶ
ମୋ ପିଠିରେ ବୋଝ ପୁଣି
ମୋ ଆଖିରେ ଶୋଷ,
ସବୁ ତ ତୁମରି ଲୀଳା
ଆହେ ଚକାଡୋଳା
କଣ୍ଠକରେ ଝଡ଼ ପୁଣି
ଆକାଶରେ ତାରା ।

ଏକପାଦ ଗଛ ଯଦ୍ଧ
ତୁମ ବୃକ୍ଷଭର,
ମୋ ପିଙ୍ଗଳ ଆଖିପତା
ଡାକ ଆଣେ, କେତେ ସ୍ୱପ୍ନ
କେତେ ଶୀତ
ନିସ୍ତବ୍ଧ ପ୍ରହର ।

ସବୁ ଦେଖେ, ସବୁ ଶୁଣେ
ଆହେ ଚକାଡୋଳା
ସମସ୍ତ ବି ଗପ କହେ,
ଏକ ତାର୍, ଦୁଇତାର
ବସନ୍ତ ର ସକାଳରେ
ଉଡ଼େ, ବସେ, ଡେଣା ପିଟେ
ମୋ ଲୋଟଣି ପାର ।



୬

# ବୃତ୍ତଭଙ୍ଗ

ଆକାଶରେ କେତେ ତାରା
ଏ ନଈରେ, କେତେ, କେତେ ମାଛ
ତଗର ଫୁଲର ବଣ
ଏବଂ ପାଳଧୂଆ ଗନ୍ଧ ।

ସବୁ ମିଶି ହୁଏ ଯନ୍ତ୍ର
ମୋ ମନର ଗୋଟାଏ ଆକାଶ
ସନ୍ଧ୍ୟାରୁ ସକାଳ ଯାଏ
ଏ ଦେହର ନଈ ମୁହାଁଣରେ
ତୁମେ ସ୍ମୃତି, ତୁମେଇଁ ପାହାଚ ।

ଆକାଶରେ କେତେ ତାରା
ଏ ନଈରେ ଶ୍ରେଷ୍ଠ ଶ୍ରେଷ୍ଠ ମାଛ ।
ଝକ୍‌ମକ ପଥରରେ
ଆଦମ ଆଲୁଅ ଜାଳି
ବଣୁଆ ହାଣ୍ଡିଟି ପରି

ତୁମେ କେବେ ଦେଖାଦେଲେ,
କେତେଦୂରରେ ଉଡ଼ିଯାଏ
ମୋ ସ୍ୱପ୍ନ ସାରସ ।

ଆକାଶରେ ଅନାବନା ଗଛ,
କେୟୂର କଙ୍କଣ ସବୁ
ରୁଣୁଝୁଣୁ ବାଜେ ।
କଟିମିଟି ଅନ୍ଧାରରେ
ଅସ୍ପଷ୍ଟ ଓ ସ୍ୱଚ୍ଛ ।

ଅରଣ୍ୟେ ସକାଳ ହୁଏ
ଏ ଗଛରେ ଫୁଲ ଆଉ ଫୁଲ ;
କଣ୍ଟକିତା ଓ ନୈମେଷାରେ
କେତେ ଖରା କେତେ ତାରା ।
ହଜିଲା କାଳର ।
ଯିବା ଭୁଲ, କଥା କହ
ସମୁଦ୍ରର ଲୁଣୀ ପବନରେ,
ଏ ଦେହର ବୃତ୍ତ ଭଙ୍ଗ
ମୋ ମନର ମୟୂର ପିଠିରେ

ହେଷଡ଼ କୃତ୍ତିକା ମୋର
ହେ ମିତ୍ର ବରୁଣ,
ଦେହେ ମୋ ଫୁଲର ନାଆଁ
ଜାଳନ୍ଦିଏ କେତେ ଗାଆଁ
ମୋ ମନର ଜହ୍ନ ।
ତଥାପି ଏ ଆକାଶରେ
ହଜିଲା ସ୍ୱପନ
ପ୍ରଜାପତି ଝିଲମିଲ
କେତେ ଅପରାହ୍ଣ ।

ବସନ୍ତର ନନ୍ଦୀ ତୁଠେ
ତଥାପି ତ ମାଛ;
'ବାଘ ମାସ ହନାଲ୍'ର
ଅଜସ୍ର ପାହଚ ।
ଡାକ ପୁଣି ବୁଡ଼ଗଲେ
ଏ ତନୁ ତଟରେ
ଶ୍ରାବସ୍ତି, ଦ୍ୱାରକା ଅବା
ମାଳାଦ୍ରି କନ୍ଦରେ ।

ତୁମର ମିଳେକ ଦେଖା
ଗ୍ରେଗ୍ର ଗ୍ରେଗ୍ର ନକ୍ଷତ୍ରବାଳ
ଜହ୍ନ ଆଲୁଅରେ;
ସାହାଡ଼ା ବ ଡଙ୍ଗା ହେଲ୍
ଯଦି କେତେବେଳେ,
ମୋ ମନ କାଚକ କାନ୍ଦେ
ଗୁଇ ଗୁଇ ନଦ ଆଉ
ସହର ଗଳରେ ।

ହେ ଷଡ଼ କୃତ୍ତିକା ମୋର
ହେ ମିତ୍ର ବରୁଣ
ଦେହେ ମୋର ବୃତ୍ତଭଙ୍ଗ
ପୁଣି ସଂକୀର୍ତ୍ତନ ।



# ଉଦ୍ଧାଳକ

ଦୃଶଦ୍‌ବତୀ ବହ ଧୀରେ
ମୋ ଜୀବନ ତଟରେ
ସରସ୍ଵତୀ ବହ ଧୀରେ ।

ଅଚାନକ ଆସେ ବର୍ଷା
ବେତ୍ରବତୀ କୂଳେ
ହଠାତ୍ ଉଠାଏ ମେଘ
ଭ୍ରମର ଦେହରେ ।

କେଣେ ଯିବ, କେଣେ ଯିବ
ଅୟି ସରସ୍ଵତୀ
ଦେହରେ ମୋ ବର୍ଷାପାଗ
ଅଗୋ ଦୃଶଦ୍‌ବତୀ ।

ବାଡ଼ ଦେହେ ଜହ୍ନି ଫୁଲ
ଅସଂଖ୍ୟ ଭ୍ରମର
କେତେ ସ୍ମୃତି, କେତେ ଗୀତ
ଗତ ଆଷାଢ଼ର ।

ତୁମେ ସବୁ ଭୁଲିଗଲ
ସତେ ଭୁଲିଗଲ
କଥାବାଟେ ଜହ୍ନିଫୁଲ
ଆଷାଢ଼ର ସ୍ୱର ।
ଯଦିଚ ବା ମୁହଁ ପଡ଼େ
ଭଙ୍ଗା ଅଇନାରେ
ସରମା, ଉର୍ବଶୀ ଅବା :
ପିଙ୍ଗଳା ନବରେ ।

କେତେ ବେଳା, ବାଲିକୁଦ
କେତେ ମଉଚ୍ଛବ
ପାରାବତ୍ ପାଳକାରୁ
ପକ୍ଷୀ ଉଡ଼ିଯିବ
ଠିଆହୁଅ, ଏତେବେଳେ
ସମସ୍ତ ଖବରେ
ଯମୁନା କୂଳରେ ଅବା
ଦଶାର୍ଣ୍ଣ ଗ୍ରାମରେ ।
କଅଁଳା ବାଛୁରୀ ପରି
ମୋତେ ଗୃଠି ନିଅ
ଦେହେ ମୋର ଖାଲି ତନ୍ତୁ
ବୁଢ଼ିଆଣୀ ଖିଅ ।
ଦୃଷଦ୍‌ବତୀ ବନ୍ଧ ଧୀରେ
ଦେହ ଉପକୂଳେ
ମୋ ଆଖିର ବାଲିଝଡ଼
ଜହ୍ନ ଓ ତାରାରେ ।

ଚେତନ ଓ ଅଚେତନ
ଦୋ' ଛକ ରାସ୍ତାରେ
ଯଦିଚ ମୋ ଉଦ୍ଧାଳକ
ଦୁଃଖେ ଡାକବୁଲେ ।

'ପକ୍ଷୀ ଭୁରେ ଫେଣଆ' ଏ
ଲୁପ୍ତ ବୃନ୍ଦାବନେ
ମହାବଳ ବାଘ ଗୃହେଁ
ତୃଷାର୍ତ୍ତ ନୟନେ ।



# ଗୋଟିଏ ଅଗିଣାର କଥା

କୁହୁଡ଼ି ଗୃଦର ଘୋଡ଼ି
ସଦ୍ଧଚ ପୃଥିବୀ
ଖଲ୍ପୁଇଁ ସ୍ୱପ୍ନେ ଦେଖେ
ଭୂମ ମୁଖ ଛବ ।

ହଂସ ପାଦ ଗଣ୍ଡି ମୋର
ବଉଦ ଦେହରେ
ଜହ୍ନ କହେ ଯିବା ଗୃଲ
ସିଢ଼ିରେ ସିଢ଼ିରେ ।
ଅପନ୍ତରା ବେଣାପାଠ
ସମୁଦ୍ର ସାରସ
ଅରଣା ମହିଁଷି ଦୁଗ୍ଧ
ଅବା ସୋମରସ ।

ପିଇ ଦେଇ ଏ ପୃଥିବୀ
ଭୂଲାଇ ପଡ଼ିଲେ
ଲଙ୍ଗଳା ପିଲାଙ୍କ ପରି
ଅବା ନାଚିଗଲେ ।

ନଈ ପଠା କାଶତଣ୍ଡୀ
କେଉଁ ବାଲିକୁଦ
କଅଁଳା ବାଛୁରୀ ଯେହ୍ନେ
ଟଳଟଳ ପାଦ ।

ଆସିଛୁ ଅଗିଣ ସତେ
ଧାନ କଆରୀରେ
ଫୁଙ୍ଗୁଳା ଦେହରେ ପୁଣି
ତୁମ କବରୀରେ ।

ନଈ ପଠା ବେଣାପାଟ
ସାମୁଦ୍ରିକ ମାଛ
ଧାନ ଖେତ ଘାସ ଦେହେ
କୁତୁକୁତୁ ହସ ।
ବୋଲି ଯଦି ଏ ସମସ୍ତ
ତୁଲି ତଳପରେ
ମୃଗଶିରା ଭ୍ରମେ ଆହା
ଆକାଶ ଦେହରେ ।

ହେ ପର୍ଜନ୍ୟ ହେ ବୃତ୍ରର
ହେ ମିତ୍ର ବରୁଣ
ଯିବାଛଲ ଶ୍ୱାନ ଖୋଜି
ଗାଆଁ ବିଲ ବଣ ।

ମୋ ଦେହରେ ଫୁଲ ଫୁଟେ
ଆକାଶରେ ଫୁଲ
କଆ ବାଡ଼େ କାନ୍ଥ ଦାଡ଼େ
ଜହ୍ନ ଓ ଭ୍ରମର ।

ଚୁପଛପ ଯିବା ଛଲ
ଗୋଠ ଗୋଠ ଗାଈ
ସକାଳ ହେଲକୁ ଆହା
ଗୋଟିଏ ବ ନାହିଁ ।

ହେ ପର୍ଜନ୍ୟ ହେ ବୃଷ୍ଟିର
ହେ ଦ୍ୟାବ୍ୟା ପୃଥ୍ବ
କେତେ ମୁଁ କାନ୍ଦିଲି ସତେ
ତୁମ ନାମ ଧରି ।

ତଥାପି ଏ ଦେହେ ମୋର
କୁହୁଡ଼ି ଗହ୍ୱର
କେତେ ନିଆଁ, କେତେ ସ୍ମୃତି
କେତେ ମଶାଣିର ।



# ଗୋଟାଏ ଝର୍କାରେ

ଗୋଟାଏ ଝର୍କାରେ
ହଠାତ୍ ଅନାଇ ଦେଲି
ସୂର୍ଯ୍ୟର ଉଦୟ
ଗଛ ବୃକ୍ଷ ମାଛ ସବୁ
ଗଳ୍ପ କରୁଥିଲେ
ଏ ପୃଥିବୀରେ ଆସନ୍ତା କି
ହଠାତ୍ ପ୍ରଳୟ ।
ପୁଣି ସୃଜନରେ
ଫୁଲ ସବୁ ହୁଅନ୍ତେ କି
ଆକାଶର ତାରା
ବଉଦ ଡଙ୍ଗାରେ ଚଢ଼ି
ଆମେ ବି ବୁଲନ୍ତେ
ଆକାଶଟା ପାଲଟନ୍ତା
ନୀଳ ଚଉତରା ।
କିମିତି ହୁଅନ୍ତା ସତେ
ପଥରଟେ ମଣିଷ ହୋଇଲେ,

ପାହାଡ଼ର ଧୂସର ଦେହରେ
ଅବା ଥଟେଇ ଜୀବନ୍ୟାସ ଦେଲେ ।
ଆମେ ସବୁ ଜାକଜୁକ
କୁମ୍ଭକାର ଖାଟ ପରି
ଯଦିବା ଚଳନ୍ତେ,
ଗଛ ବୃକ୍ଷ ମାଛ ସବୁ
ଆମକୁ ଦେଖନ୍ତେ
କମିତି ହୁଅନ୍ତା ସତେ
ପାହାଡ଼ ଗୁଡ଼ିକ ଯଦି
ମଣିଷ ହୁଅନ୍ତେ ।

ଅତଡ଼ା ଖସଇ ଯେମନ୍ତେ
ପାହାଡ଼ ଦେହରୁ
ଆମେ ବି ପଡ଼ନ୍ତେ ଡେଇଁ
ଆକାଶ ମାର୍ଗରୁ
କମିତି ହୁଅନ୍ତା ଆହା
ଆମେ ସବୁ ବାଘ ପାଲଟିଲେ
ସ୍ୱପ୍ନ, ପ୍ରେମ, ସ୍ନେହ ସବୁ
ପାକୁଳ କରିଲେ ।
ପୃଥିବୀ କାନ୍ଦନ୍ତା ଯଦି
ମିଛରେ କାନ୍ଦନ୍ତା
ହିଂସ୍ର ନେହେଇ ଯଦି
ଥରୁଟେ ଡରନ୍ତା,
ମନ୍ଦ କି ହୁଅନ୍ତା ନାହିଁ
କଅଣ କହୁଛ
ଗୋଟାଏ ଝର୍କାରେ ରହି
ତୁମେ ବି ହସୁଛ !!

# କାଠଯୋଡ଼ି

ହରିଣ ନ'ହଏ ଧରା
ଦଉଡ଼ନା, ବଡ଼ଖରା,

ଜୀବନରେ କେତେ ଶୋଷ
ଟଗର ଫୁଲର ହସ,
ଚୁପ୍‌ଚୁପ୍ କାଠଯୋଡ଼ି
ଏ ଦେହରେ ପିଠିହୁଏ
ସେ ଦିନର ନଈବାଡ଼ି ।

ବାଲି ବି ହୋଇଲା ତାରା,
ଦଉଡ଼ନା, ବଡ଼ଖରା
ଦେହରେ କାହାର ହାତ
ସମସ୍ତ ବି, ଗୋଟିଏ ଡଗର ।

କାଠଯୋଡ଼ି ସ୍ୱପ୍ନ ଦେଖେ
ଜଳ ଆଉ ମାଳ ଚଉତରା ।
ଆଷାଢ଼ର ଭସାମେଘ
ବସନ୍ତର କଅଁଳ ଡାକରା ।

କାଠଯୋଡ଼ ଆହା ସତେ
କେତେ ଦାଗଦାର
ଦାରଣ ବ ଦାଏନାହିଁ ଧାର ।
ମୃତ୍ୟୁର ଆସିବ ଆହା
ଏ ଫଗୁଣ ପୁଣି ଗୃଳଯିବ
ଦେହେ ସିନା ସମସ୍ତର ଖାର ।

ସମସ୍ତ ବ ଘୂମେଇ ପଡ଼ିବ
କାଠଯୋଡ଼ ବାଲ ପୁଣି
କେତେବେଳେ ନଆଁ ପାଲଟିବ;
ଚୁପ୍ ଗୃହ୍ ଦାସେ ପୁଣି
କେତେବେଳେ କବାଟ ଖୋଲବ ।

ଦାଉଡ଼'ନା ବଡ଼ଖାର ।
ମନରେ ବଉଦ କେତେ
ପିଠି ହୋଇଯାଏ,
କେତେ ବାଲଘର ପୁଣି
ଆଜ ଭାଙ୍ଗିଯାଏ,
କାଠ ଯୋଡ଼ ସବୁ କହେ
ସବୁକହେ, ସମସ୍ତଙ୍କର
ଦାରଣ ମୋ'ଦାଏ ନାହିଁ ଧାର ।



୨

# ଭଙ୍ଗାଘର

ଉଡ଼ିଗଲା ଚେଣ୍ଢାଳିଆ
ଝାଡ଼ିଦେଇ ପର
କାନ୍ଦନାଲେ ଜେମାଦେଈ
ଦେଖି ଭଙ୍ଗାଘର ।
ଭଙ୍ଗା ଘରେ କେତେ ଗୁଇ,
ଆଲୁଅ ଅନ୍ଧାର,
ମନର ମୟୂର ପୁଣି
ସ୍ୱପ୍ନାତୁର, ମେଘେ ଖାଲି
କୁଆଁ କୁଆଁ ସ୍ୱର ।

ଆକାଶର ଡାକ ପୁଣି
ପୃଥିବୀର ଋଣ,
କାନ୍ଦନା'ଲେ ଜେମାଦେଈ
ଚେତ ଅଭିମାନ ।
ତାରା ଆଉ ଫୁଲବନେ
ହଜିଗଲା କେତେସ୍ମୃତି
କେତେ ହସ କାନ୍ଦ ଆହା
ମୋ ସ୍ମୃତି ଲିଖନ ।

ଗୋପରୁ ମଥୁରାପାଏ
କେତେ ବାଟ ଆଜ
ରନ୍ତୁଦେବ ମନେ ପଡ଼େ
ମନେ ପଡ଼େ ଦେହେ ମୋର
ସମସ୍ତର ତେଜ ।

ଦର୍ପଣର ଆରପାଖେ
ଗ୍ଲେଟ ପିଲା ପରି
କୁତୂହଳୀ ବନ୍ଧୁ ମୋର
ଖେଳଇ ଗୃଟଅଣ୍ଟର ।
ଧୂସର ବିବର୍ଣ୍ଣ ପୁଣି
ସବୁ ଅସୁନ୍ଦର
ତଥାପି ଲଗିଛି ଆହା
ଅଶେଷ ହୃନ୍ଦର,
ମୋ ସ୍ମୃତିର ବେଳା ଭୂଇଁ
ବାଇଶି ପାହାଚ
ତୋହର ଆଲୋକେ ନାଥ
ସବୁ ଅପହଞ୍ଚ ।

ସିଡ଼ରେ ସିଡ଼ରେ ଚଢ଼ି
ଆଲୋକରେ ଅନ୍ଧ ପରି
ଶ୍ୱେତକେତୁ ମନ ମୋର
ଗଣି ଗଣି ଥକାଲଣି
ଅନ୍ଧାର ଲହଡ଼ି ।
ତଥାପି ମୋ ଭଙ୍ଗାଘର
ସ୍ମୃତିର ମଶାଣି ଭୂଇଁ
ମାଳ ମାଳ ହାତେ ପ୍ରଭୁ
ଦିଅ ଥରେ, ଦିଅ ଛୁଇଁ
ଖୋଜେ ମୁହିଁ, ତୋର ମାଳ ହାତ
ଲସ୍ଯ ଆଉ ବଳସ୍ତର
ଗୋଟିଏ ମୁହୂର୍ତ୍ତି ।

# ଆଖିର ଫୁଲ

ବଗିଚ୍ଚରେ ଫୁଲଟିଏ
ନୂଆ ହୋଇ ଫୁଟିଛି
ଆକାଶରେ ତାରଟିଏ
ନୂଆ ହୋଇ ଉଠିଛି

ଫୁଲଟି କହିଲ ମୋତେ
ମୁଁ ସତେକ ଗାଆଁ ଝିଅ
ଅଗଣାରେ ନାଚୁଛି
ତାରଟି କହିଲ ମୋତେ
ମୁଁ ସତେକ ରଜାଝିଅ
ତୁମପାଇଁ ବସିଛି !

ମୁଁ ଚୁହିଁଲ ଫୁଲଟିକୁ
ମୋ ଝରକା ଫାଙ୍କରେ
ମୁଁ ଦେଖିଲ ତାରଟିକୁ
ଯଦି ତୁମେ ଡାକରେ ।

ଫୁଲଟି କହିଲା ମୋତେ
ମୁଁ ନୟନ ଫରୁଆ
ଆକାଶରେ ତୁମ ପାଇଁ
ଫୁଟେ କେତେ ମରୁଆ ।

ମୁଁ ଚାହିଁଲି ଆକାଶକୁ
ମୁଁ ଚାହିଁଲି ତାରକୁ
ଆଖିର ଲୋତକ ଯେତେ
ତାର ହେଲେ, ଫୁଲ ହେଲେ
ମୁଁ କାନ୍ଦୁଛି ଛାଆଁକୁ ।



# ଚିଲିକା ଓ ଚନ୍ଦ୍ରିକା

ତୁମେ କେବେ ଦେଖିଛ କି
ଆଖିର ଚନ୍ଦ୍ରିକା
ସ୍ୱପନର ଶଙ୍ଖଚିଲ
ହଜିଗଲା ଅଶ୍ରୁତର
ଅସଂଖ୍ୟ ବଳାକା ।
ଏ ଦେହର ନୀଳ ହ୍ରଦେ
ଚକ୍ରବାକ ପରି
ପଦ୍ମା ଶିରେ ଖେଳିବୁଲେ
ଦିବସ ଶର୍ବରୀ ।
କେତେବେଳେ ହୁଏ ପୁଣି
ଗୋଟାଏ କାର୍ମୁକ
ମୋ ମନର ଇନ୍ଦ୍ରଧନୁ
ସପ୍ତପର୍ଣ୍ଣୀ ନୀଳ ବନୁ
ଡାକଆଣେ କେତେ ହସ
ସ୍ମୃତିର ଚମକ ।

ନାମ ହୀନ, ବର୍ଣ୍ଣ ହୀନ
ପୁଣି ବର୍ଣ୍ଣ ପୂର୍ଣ୍ଣ
ବୟସର ସ୍ୱର୍ଣ୍ଣ ସଂଧ୍ୟା
ଅତୃପ୍ତ ଜୀବନ ।
ସବୁ ଏଇ ଚଲକାର
ଉଭୟ ତଟରେ
ଉଦେ ହୁଏ, ଅସ୍ତ ଯାଏ
ପ୍ରତି ମୁହୂର୍ତ୍ତରେ ।

ସେତେବେଳେ ମନେ ହୁଏ
ଏ ଚଳ୍‌କିକା ସେ ଚଳକା
ଭେଦାଭେଦ ନାହିଁ
ରାଧାନାଥ ମାଳ କାବ୍ୟ
ମୋ ଆଖିର ମାଳ ଦ୍ରଷ୍ୟ
ଆଉ ମାଳ କଇଁ

ପୁଣି ମୁଁ କଳନା କରେ
ସମୁଦ୍ରର ଘୂମନ୍ତ ଚକ୍ଷୁରେ
ମୋ ଦେହର ରାଜହଂସ
ଉଡ଼େ ଯେବେ ଅନ୍ୟ ଇଲାକାରେ

ମୁଁ କ'ଣ ଦେଖଇ ପ୍ରଭୁ
ମୋ ମନର ଭଙ୍ଗା ଅଇନାରେ
ସମୁଦ୍ରର ଲୁଣୀ ହାଓ୍ୟା
ରୂପା କାନ୍ତି ମେଘ ଏବଂ
ସ୍ମୃତି ହବରରେ ।

ମୋ ଆଖି ପାଲଟେ ତାରା,
ମୋ ଦେହରେ କାକ ଜ୍ୟୋତ୍ସ୍ନା
ମୋ କଣ୍ଠରେ ପାରିଜାତ,
ମୋ ହାତରେ କୁରୁବକ ମାଳା ।

. ହଜି ଯାଏ ମୋ ସଂବିତ
ହଜିଗଲେ ତୁମେ ଶକୁନ୍ତଳା ।

ମୁଁ ପୁଣି କଳନା କରେ
ଏ ଚଲ୍କିକା ସେ ଚଲକା
ଭେଦାଭେଦ ନାହିଁ
ଏ ସମୁଦ୍ରର ନୀଳ ଆଖି
ମୋ ଆଖିର ନୀଳ ପକ୍ଷୀ
ମିଶାମିଶି ଯହିଁ ।



# ନଚିକେତାର ସ୍ତବ

ଅରଣା ମଇଁଷି
ରହିଛୁ ଅନାଇ
ମଇଁଷିର ପାଖ
ନ ଯାଅ ଦନାଇ ।
ଏ ମଇଁଷି ଲଞ୍ଜ ପିଟେ
ଗାଁ ଗହଳରେ
ଏ ମଇଁଷି ମାଟିତାଡ଼େ
ସହର ତଳରେ ।

ତା ଶିଙ୍ଗ କହଇ କଥା
ବାଘ ସଙ୍ଗତରେ
ତୁମେ କେବେ ଚଢ଼ିଛକି
ମଇଁଷି ପିଠିରେ ।

ଏ ମହିଁଷି ପିଠେ ଚଢ଼ି
'ଯାଏ କଳା କାହ୍ନୁ
ଏ ମହିଁଷି ଦୁଧପିଇ
ନାଚେ ଆମ ରୁନୁ

ମୁଁ ଦିନେ ଖୋଜିଲି ଯିବ
ମହିଁଷି ଗୋଠକୁ
ମୁଁ ଦିନେ ଦେଖିବି ଯିବ
ମହିଁଷି ଆଳକୁ ।

ମୁଁ କନ୍ତୁ ପାରେନା ଯାଇ
କମିତ୍ତ ବା'ଯିବି ?
ତା ପିଙ୍ଗଳ ଆଖିପତା
ତା ଜଙ୍ଗଲ ଗୁଇ
ମୋତେ ଝୁବ ଡରାଇଲା
କଲେଜ ଛକରେ,
ମୋତେ ବଡ଼ ବ୍ୟସ୍ତକଲା
ଜାହ୍ନ ଆଲୁଅରେ ।

ମୁଁ ଲୁଚିଲି ବେଗେ ଯାଇ
ବାରୁଣୀ ବନ୍ତରେ
ଜରୀନାଇଁ ମୃତ୍ୟୁନାହିଁ
ଯେଉଁ ନଗରରେ ।

ବ୍ୟାସ ଆଉ ଭୀମସେନ
କହିଲେ ବାଟରେ
ମହିଁଷି ଗୋଟାଏ ଚରେ
ଦକ୍ଷିଣ ପଟରେ ।

ମୁଁ ଧାଇଁଲି ଖରତର
ସଦର ରାସ୍ତାକୁ
ମଦିନା ଓ ଜେରୁଜେଲମ
ପୁଣ୍ୟ ସହରକୁ ।

ସେଦିନ ହୁଏତ ପର୍ଣ୍ଣୀ
ଅମିସା ତିଥିରେ
ସାବର୍ତ୍ତୀଙ୍କ ନାମଧରି
ବ୍ରତ କରୁଥିଲେ ।
ମହ୍ନିଁଷି ଅନାଇଥିଲି
ଆମ ସମସ୍ତଙ୍କୁ
ଗାଁଆଁ ପୋଖରୀରେ ଫୁଟା
ପଦୁଅଁ ମାନଙ୍କୁ ।
କଣ୍ଡାଳିଆ ଜଳରେ ତା
ଫେଣ ଗୁଡ଼ି ଗୁଡ଼ି
ନବାଳ ଓ ନସ୍କରୁଣ
ନସ୍କୁର ମୁଁ ହେଁଟି ।
ଡାକୁଥିଲି ମୋତେ ପୁଣି
ମଟର ଷ୍ଟାଣ୍ଡରେ
ଠିକ ଠିକ ତାଙ୍କର
ଆଖି ମିଟିକାରେ ।
କମିତ୍ତ ଚଢ଼ିବ କହ
ମହ୍ନିଁଷେ ପିଠିରେ
ବୁଢ଼ା ମହ୍ନିଁଷାଳ ଯେତେ
ଦୁଗ୍ଧ ପାଣ ଦେଲେ
ଏ କାଦୁଅ ଏଇମାଟି
ଏଇ ଆମ ଗାଆଁ
ସୁନା ଝଲମଲ ନଈ
ତା ସୁନ୍ଦର ନାଆଁ ।
କମିତ୍ତ ହୋଇବା ପାରି
ମହ୍ନିଁଷି ପିଠିରେ
ଆଶ୍ୱିନ ଦଶମୀ ଅବା
କାଳୀ ଅମିସାରେ ।

ମୁଁ ଏଣୁ ବସିଛୁ ଭଳ
ପୋଖରୀ ତୁଠରେ
ଅରଣା ମହିଁଷି ଧାଏଁ
ପୁଣି ମୋ ପଛରେ ।



# ପୁରୀରେ ସକାଳ

ରାତି ପାହିଲାଣି
ଡାକଇ କାଉ
ଉଠ ଉଠ ମଠ
ନ କର ଆଉ ।

ଏ ରାତି ପାହିଲା ଯଦି
କୁଣ୍ଡୀ କଣ୍ଟକରେ
ଏ ରାତି ପାହିଲା ଯଦି
ଯମୁନା ତୀରରେ ।
ଏ କାଉ ଉଠାଇ ଦିଏ
ଆମ ସମସ୍ତଙ୍କୁ
ଏ କାଉ ଚେତାଇ ଦିଏ
ପିଙ୍ଗଳା ମନକୁ ।

ଆମେ ଏବେ ଗାଇବାରେ
ରବିର ଭଜନ
କେଶବଷ୍ଠି କନ୍ୟା ଆଜ
ଯେତେ ଯୋଗୀଜନ ।
ହଠାତ୍ କାନ୍ଧଲେ କେତେ
ତୁମରି ପାଖରେ
ହେ ବନ୍ଧ ନୟନ ତୁମେ
ଡାକୁଥିଲ ବେଳେ ।

ରଞ୍ଜି ତ ପାହ୍ନ୍ଲା ଏବେ
ଭୁବନେଶ୍ୱରରେ
କିଷ୍କିନ୍ଧା ନଗର ଅବା
ଚିତ୍ରକୂଟ ଘଟରେ ।
ତୁମେ ଏବେ ଚକାଡୋଳା
ହେ ବନ୍ଧ ନୟନ
ମୋ ଦେହେ ରଞ୍ଜିର ବୋଝ
ରଞ୍ଜିର ସ୍ୱପନ ।

କମିଛି ପିଙ୍ଗିବ କହ
ଜନ ପାରିବାରେ
ମୋ ଦେହ ଦହନ ଆଜ
ଚଇତ ନାଚରେ ।

ବାୟୁସ ଫାଲଟେ ପଦ୍ମ
ତୁମ ତୀର୍ଥ ଜଳେ
ଚତୁର୍ଦ୍ଧା ମୂରତି ପ୍ରଭୁ
ଏଇ ନୟନରେ ।

ଏ ରାତି ଜରଖା ପୁଣି
ଆଖି ମଳ ବସେ
ମୋ ଦେହେ ପ୍ରଭାତ ପଦ୍ମ
ଫୁଲ ଫିଙ୍ଗି ଆସେ ।
କେମନ୍ତେ ଗାଇବା କହ
ବାହିର ଭଜନ
ମୋ ସ୍ବ୍ନଭିତର ଗୃଳଘରେ
ଶୁଭେ ତୁମ ସ୍ବନ ।

ଏ ଦେହେ ଲାଗଇ ନାଥ
ସେ ରାତିର ତାତି
ରଜବତୀ କନ୍ୟା ପାଇଁ
ଯୋଗୀଥିଲ ମାତି ।
ମୁଁ ହନେ ବା ଯୋଗୀ ହେଲି
କୁହୁକ ରାତିରେ
କମଣ୍ଡଳୁ ପାଣି ପଡ଼ି
କଳା ମେଣ୍ଢାଟିରେ
ଅଗୁନକ ପାଲଟିଲି
ଏଇ ରଜାଝିଅ
ସ୍ବପନରେ ଝିଲମିଲ
ତା କନକ ଦେହ ।

ତା ଆଖିରେ ହାରିଗଲା
ବନର ହରିଣୀ
ଛନ ଛନ ସୁନାଦେହ
ଚମ୍ପକ ବରଣୀ ।

ମୋତେ ଖୁବ୍ ଡରାଇଲା
ପୁଣି ସହରରେ
ସଞ୍ଜ ଆଉ ସକାଳର
ରୁଦ୍ଧ କୋଠରୀରେ ।

ମୁଁ କାନ୍ଦୁଛି ମାଳ ଚନ୍ଦେ
ଗୃହେଁ ବାର ବାର
ହେ ଭୁଷଣ୍ଡି, ହେ ବାୟସ
ହେ ପ୍ରିୟ ଦୋସର ।



# ଜୀବନ

ଏଥୁ ଅନନ୍ତରେ ଆସେ
ହଠାତ୍ ସକାଳ
ମୃଗପରି ଡେଇଁ ଡେଇଁ
ମୋ ମନ ଅରଣ୍ୟେ ।
ପଲ୍ସ ବନରେ ଲେପି
ରଙ୍ଗ ପରେ ରଙ୍ଗ
ମୋ ସ୍ମୃତିର ଆକାଶରେ
ସକାଳର ମୃଗ ।

କଦମ୍ବ ଓ କଇଁ ଫୁଲେ
ଅସମ୍ଭବ ଭିଡ଼
ସୋରଭ କଆଁଶ୍ରୀ ପରି
ମୋ ଦେହର ଗ୍ରନ୍ଥିପାଖେ
ଏକାନ୍ତ ଉତ୍ସବ ।

ଲୁଲବାପୁ। ଗୀତ ଆଜ
ମୋ ମନର ମୃଗ ।
ହେ ଆକାଶ, ତୁମର କୋଳରେ
ଯଦ୍ଵା ଝପଟି ଯାଏ
ସମୁ ଦ୍ର ଲହର ପାଖେ
ଅନାମିକା, ଅନାବୃତ
ଛନ ଛନ ମୃଗ ।

ସମସ୍ତର ସିଡ଼ିରେ ସିଡ଼ିରେ
ବୁଲି ପୁଣି ଦେଖାହେଲେ
ତୁମର ସାଥିରେ ।
ଭ୍ରାନ୍ତମତ୍ତ ସକାଳର
କୁହୁକ ପେଡ଼ିରେ ।

ଶଣଫୁଲ କୁରୁବକ
ଅଶୋକ ଡାକରେ
ଫୁଲ ଦେଖା ସବୁରେ ସବୁ
ବ୍ରହ୍ମବର୍ଷ ଦେବବର୍ଷ
ତାର ଆଲୁଅରେ ।

ସେତେବେଳେ ମନେପଡ଼େ
ହେ ବସନ୍ତ, ହେ ସକାଳ
ହେ ଅବୁଝା ମୃଗ,
ସମସ୍ତ ବଛଣାପାର
ମୁଁ ବ ଶୋଇଛୁ
ଦେହୁ ମୋର ଲଭୁନାଇଁ ମୋଟେ
ଅରୁନ୍ଧତୀ ତାରାର ଆଲୁଅ ।

# ପୃଥ୍ୱୀପାଇଁ ଗୋଟିଏ କବିତା

ଆଖି ମିଟି ମିଟି
ଚମ୍ପା ଫୁଲ ମୋ .
ଆକାଶେ ରହିଛୁ ଚୁହିଁ
କାହନା ମୋର
ଅଳଅଳି ଜେମା
ସଞ୍ଜ ଆସଇ ନଇଁ ।

ରୁପା ଝଲମଲ
ମଲ୍ଲୀ ପାଖୁଡ଼ା
କାଗଜ ଟୁକୁରା ଯେତେ
ଫିଙ୍ଗିଲ ପଦ୍ଧ
ଅଳଅଳି ଜେମା
କଅଁଳ ବାହୁଯୁଗ ସାଥେ ।

ଗହ ଗହ ହସେ
ଦୂର ବେଣାପାଠ
ମଳ ଗନ୍ଧର ଏ କ୍ଷେତ

କଅଁଳ ବାହୁଗ୍ରୀଂ
ପଛରେ ଦଉଡ଼ି
ହ୍ୱାଲଆ ମାରଇ ନେତ ।
ମନେ ହୁଏ ମୋର
ସବୁ ଶୂନଶାନ
ଏ ନୀଳ ଆକାଶ ପର ।

ନିଦ ଢଳ ଢଳ
ଆଖିରେ ତୁମକୁ
ପାରୁନ ଚହ୍ଲାଠ କରି ।



# ଖେଳ

## ସ୍ମୃତି—(୧)

ଆମ ମାଳ ପଡ଼ଆରେ
ଠିକ ଠିକ କୁସୁମ
ଫୁଲବନେ ପଣ୍ତ୍ରୁ ନାହିଁ
ଦେହମନ ଉଷୁମ ଲୋ
ଗୃହାଁ ମାଘୀ ପ୍ରସୂନ ।

ଠକ୍ ଠକ୍ ଧରାପଥେ
ହସ ହସ ଜଙ୍ଗଲେ
ମାଘେଇ ପରବେ ଆମେ
ଖେଳୁଆଡ଼ି ସରବେ ଲୋ
ଫୁଲ ଦେହ ଉତ୍ସବେ ।

ଅଥଳ ଏ ଶାଳ ବନ
ନଗୁଟିଆ ରାଇଜ
ଖରାର ତରାସ ନାହିଁ
ଅଛି ଗୁଇ ମୃଦୁଜ ଲୋ
କାହିଁ ହଜେ ସୂରୁଜ ?

## ସନ୍ଧାନ—(୨)

ଫଗୁଣର ଫୁଲ ଗୁଚ୍ଛି
ଝଲ ଝଲ ହୃଦୟୁ
ବାଆ ପରବ ଆମ
କପୁଁ । ନାଏ ବଦାୟୁ ଲୋ
କାନ୍ଦ କାନ୍ଦ ମଳୟୁ ।

ଶଇଗି ଫୁଲଆ ଦେହ
ଆଜ ଫାଟି ପଡ଼ଇ
ଧାଛିକା ଫୁଲଆ ଦେହ
ସାଥୀ ଆଜ ଲୋଡ଼ଇଲେ
କାହିଁ ଗଲ ବଢ଼େଇ ?

ଫଗୁଣର ଫଗୁବୋଳି
ଏଇ ଦେହ ଖଣ୍ଡରେ
ଲୁଚକାଳି ଖେଳେ ସେତ
ଏ ଜୀବନ ଦାଣ୍ଡରେ ଲୋ
କେଉଁ ଗାଆଁ ମୁଣ୍ଡରେ ।



୬

# ନଈ

ପାହାଡ଼ୀ ଝରଣା ସମ
ତୋଫା ଏକ ନଈ
କେତେବେଳେ ମନତଳେ
ଯିବ ଯାଏ ବନ୍ଧି ।

ସରାଗ ପରାଗ ଯେତେ
ଏ ଦେହ ଫୁଲରେ,
ଡାକେ କେତେ ମଉଛବ
ସ୍ମୃତି ଫଗୁଣରେ—

ସମପୁର ବାଲିକୁଦେ
ବୋହୂ ଘର ଖେଳ
ଥକ୍‌କା ଲଗେ; କୁନି ପାଦ
ଗେହ୍ଲେଇ ଦୁଲାଳୀ ।

ଆକାଶରେ ଜହ୍ନ ତାରା
ଖାଲି ମଲ୍ଲୀ ଫୁଲ
ଅଝଟ ମନର ଯେତେ
ନଈ ଆଉ ନାଳ ।

ଫୁଲଗଛେ ଦେଖି ଦେଖି
ତୁମ ନୂଆ ଛଇ
ଭ୍ରାନ୍ତ ଏଇ ଦେହ ତଟେ
କାଏ ତୁମେ ନଈ ?



# ମେଘ

ବନ ପଥେ ବାଘୁଆଣୀ ପାଗେ
ଯଦ୍ଧ କେବେ ଚନାଙ୍ଗୀ ବାଘୁଣୀ
ଲୁଚି ଯାଏ କଳାଧୁମ ଘଟେ
ଦୂରେ ଦେଖି କାଚ କେନ୍ଦୂ ପାଣି ।

ଓଠେ ଧରି ହସର ବତାସ
କହେ ଯଦ୍ଧ ପ୍ରଠା ପଠା ବାଘ
ଟିକେ ରହ ଟିକେ ଆଗୋ ରହ
କଳା ଗୃତି ବାଘେଇ ପରବ ।

କୁଞ୍ଜ କୁଞ୍ଜ ପାହାଡ଼ ଅଡଡ଼ା
ପ୍ରେମିକର ଅବା ପାଞ୍ଜି ବଡ଼ା
ମେଘ ଖୋଲେ ଏଇ ଧରଣୀରେ
ସ୍ୱପ୍ନଂ ଦୃଷ୍ଟ ନାୟିକା କ ଝୁରେ !!

ମାଳ ଫୁଲ ପରି ଏଇ ମେଘ
ଆକାଶର କୃଷ୍ଣ କବସ୍ଥରେ
ଖୋସି ଦେଇ ଅଦେଖା ପ୍ରେମିକ
ଏ ମାଟିକୁ କି ପାଗଳ କରେ ?

କଳାଖମ ବାଘୁଆଣୀ ପାଗେ
ଯଦ୍ଧ ଆସେ ଶକ୍ତିତା ବାର୍ଦ୍ଧଣୀ,
ଓଠେ ଧଣ୍ଣ ବଜୁଳର ହସ
ଦୂରେ ଛୁଟେ ବନର ହରିଣୀ ।

ଏଇ ମେଘ ମହାବଳ ବାଘ
ମୋ ଆଖିର ବେଣ୍ଟବଣ କୂଳେ
ପ୍ରସ୍ରବଣ ଶୈଳ ଡେଇଁ ଆସେ;
ମୋ ଦେହର ଅଶୋକ ବନରେ ।



# ଜୁଆଙ୍ଗ ନାଚ



ସେବେରେ ବୁଙ୍ଗ
ସେବେରେ ବୁଙ୍ଗ୍
ଲିପିକ ଲସାପୁ
ସେବାପୁ ସେବାପୁ
ସେବେରେ ବୁଙ୍ଗ

ଅଗିଣର ମେଘ ଫାଙ୍କେ
ଯଦିଚ ମୋ ମନ ଡାକେ
ସେବେରେ ବୁଙ୍ଗ୍

କିଆରିରେ ଧାନ ଫୁଲ
ଖଞ୍ଜିଲେ ମୟୂର ଚୂଳ
ଅଗିଣର ଗେଣ୍ଡାଳିଆ
ଝାଡ଼ିଦେଲା ପର
ପୃଥିବୀ ବାହୁନ କାନ୍ଦେ
ଲୁହ ଜର ଜର ।

ସେବେଟରେ ଭୃଙ୍ଗ
ନମଇ ଦୂରେ ଉଡ଼ିଯାଏ
ଅଳକା ଫୁଲଙ୍କୁ
କାହିଁଲେ ମୟୂର ଚୂଳ
କେଣେ ଲେ ପୀତ ଦୁକୂଳ
ଶ୍ୟାମ ଘନ ଫେରିବନ
ତୁମ ନୟନକୁ ।

ଧାନ ଖେତ ହୁଏ ଯଦ
ସୁନା ହଳଦିଆ
ଶିଶିର ପାଲଟେ ଯଦ
ମଳ ବଉଦିଆ
ବେଣୀରେ ଖଞ୍ଜିଲୋ ଫୁଲ
ଆଖି ମୋର ଛଳଛଳ
କେତେ ଦୂରେ କଳା ମେଘ
ଭାବ ବନୋଦିଆ
ମୃଥିଷା ବାହୁନ ହୁଏ
ମଳ ପାଣ୍ଡୁରିଆ ।

ଆକାଶରେ କେତେ ଛାଇ
ଅଶିଣର ରସ
ହେ ରଙ୍କିକ କେତେ ଦୂରେ
ତୁମ ରାଜହଂସ
ଯବୁ ଯଦ ଉଡ଼ିଯାଏ
ସଫେଦ ମେଘରେ
ସବୁ ଯଦ ରହିଯାଏ
ଦେହରେ ଦେହରେ

ନେହ ଋତ୍ୱିକ, କାନ୍ଦ କସ୍ତୁଁ
ଅଗ୍ନିଣ ଝଞ୍ଜରେ
ଅଶେଣ ବ ନଚକେତା
ଆମ ନୟନରେ ।



# ସକାଳ

ଉଷା ଓଠେ
ଉଷା ଓଠେ
ଆକାଶେ ଓ ମନେ ।
ତୁମେ ସଧ ପକ୍ଷୀ ହୁ'ଅ
ଏ ଶାଳ ଅରଣ୍ୟେ ।

ସୃଷ୍ଟି ତୁମ ହ୍ଲାଦରେ
ଉଜଳାଇ ଦେଇ
ତୁମେ ସଦ ପକ୍ଷୀ ହୁ'ଅ
ଶତଦ୍ରୁରେ କଥା କହି କହି

ଦେହଁରେ ଲାଗନ୍ତା ରଙ୍ଗ
ମୋ ମନରେ ବନ୍ଧୁ
ପଲାସ ବନରେ କେତେ
ଫୁଲର ରୋଷଣି ।

ଝିସା ଢେଢେ
ଝିସା ଢେଢେ
ଆକାଶେ ଓ ଘରେ
କାଚକେନ୍ଦୁ ମନ କାନ୍ଦେ
ତୁମ ଅପେକ୍ଷାରେ ।

ଆଖିରେ ଫୁଟାଇ ଫୁଲ
ମୋ ଶତଦ୍ରୁ ନଈ
ଏ ଦେହର ମାପ କୁଞ୍ଜେ
ସଦ୍ଧି ଯାଏ ବହ୍ନି ।

ମନେ ମୋ ଲାଗଇ କେତେ
ଫଗୁଣର ନିଆଁ
ଉହ୍ନେଇରେ ପୋଡ଼ି ମରେ
ମୋ ଦଶାର୍ଣ୍ଣ ଗାଆଁ ।



ଝସାଢ଼େଢେ—ସୂର୍ଯ୍ୟଢ଼େଷା ଝାଡ଼ୁଛୁ,

## ଅଂଶୁପା

ଏ କୂଳୁ ସେ କୂଳ
ସେ କୂଳର
ନଉକା ଚହଲ
ରୁପା କାଣ୍ଡ ମାଛ
ଆଉ ଆଖିର ଶିକାର
ଜଳ କଳ କଳ ।

ଜଳ ଓ ପାହାଡ଼
ଲଜକୁଳୀ
ନୂଆବୋହୂ ପରି
ଏ ପାହାଡ଼ ତଳେ
କାହାର କି
ଭଙ୍ଗି ନ ପହୁଡ଼ ।

ହୃଦରେ ଆକାଶ
ମେଘର ଉତ୍ତରି ପତ୍ର
କ୍ଲାନ୍ତ ମନ
ଶ୍ରାନ୍ତ ଦେହେ
ଅସଂଖ୍ୟ ସାରସ ।
କ୍ୱଚିତ ସ୍ୱପନ
ଆଉ
କ୍ୱଚିତ୍ ପ୍ରକାଶ ।

ଏ ଜୀବନ
ହୃଦ ନା ଆକାଶ
ଦର୍ପଣର ପ୍ରତିବିମ୍ବ ।
ମୋ ପୃଥ୍ବୀର
ଅସ୍ତ ଉଦୟର
ଦରଜଳ
ଦରଭୁଲ
ଆଉ
ମୁଗ୍ଧ ଇତିହାସ ।



୬

# ଚିଲିକା

ତୁମେ କେବେ ଯାଇଛ କି
ଚିଲିକା ବକ୍ଷରେ
ରାଧାନାଥ ନୀଳକାବ୍ୟ
ଅଥବା ସେ ପରିଚିତ
ନୀଳ ପୃଥିବୀରେ

ତା ଦେହର ନୀଳସ୍ମୃତି
ତା ମନର ନେଳିଆ ଆକାଶ
ଏବେ ବି ଫୁଟାଏ ଫୁଲ
ଅବସନ୍ନ କେତେ କବଣ୍ଠରେ
ଶୃଙ୍ଗାର ବିଳାସ ।

ପୃଥିବୀ ହୁଏତ କାନ୍ଦେ
ଭୁହାଇ ଭୁହାଇ
ମିଶର ବା ବାବିଲୋନ
ଅବା କେଉଁ ସୁମେରୁ ଗୁହାରେ

ଗଲେ କେତେ ବସନ୍ତଶ୍ରୀ
ହମ୍ବାରଡ଼ ଦେଇ,
'ସ୍ୱର୍ଗୀ ସ୍ରାପ୍ୟେ ତୋତେ ମୁଁ ଲୋ
ନିତି ସୁମରଇ ।

ଆଖିରେ ଶ୍ରାବଣୀ ମେଘଁ
ହଠାତ୍ ଉଠିଲେ
ରୁପାକାନ୍ତି ମାଛ ଯେତେ
ପାଣିରେ ବୁଡ଼ିଲେ
ଆମର ଏ ନଉଯାତ୍ରା
ଆମର ଏ ଜଳଯାତ୍ରା
ହଠାତ୍ ସରିଲେ ।
ଆମେ ଯିବା ପାରିକୁଦ
ନଈ ମୁହାଣରେ
ଆମେ ଯିବା କଙ୍କଡ଼ାର
ଗୋଡ଼ ଖୋଜି
ଜହ୍ନ ଆଉ ତାରା
ଆଲୁଅରେ ।

ଘଲେରି ଶିଖରେ ଏବେ
ସ୍ୱର୍ଣ୍ଣ ସିଂହାସନ
କାନ୍ଦନାଲେ କାଳିଜାଈ
ତୋତେ ମୋର ରାଣି ।

ଏ ଦେହ ଘୋଷଯାତ୍ରା
ଯିବ ପାରିକୁଦ ?
ଏ ଦେହର ମହାଯାତ୍ରା
ଯିବ କୁଦ ପାରେ ।

ତୁମେ କିଆଁ କାନ୍ଦ ତେବେ
ଆରେ ପ୍ରାଣ ସଖି
ସମୁଦ୍ର ଓ ମନ୍ଦୋଦରୀ
ହସେ ମୋତେ ଚୃହିଁ



# ମୟୂର ସଂହାର

ସପୁଷ୍ପ ପାଚଇ
ମୟୂର ନାଚଇ

ଏ ସପୁଷ୍ପ ପାଚେ ଯଦ
ମୋ ମନ ଗହନେ
ଏ ମୟୂର ନାଚେ କେତେ
ଉଦାସ ଲଗନେ ।

ମୁଁ କହ୍ଲ ମୟୂରରେ
ଆକାଶର ନୀଳ
ମୋ ଆଖିର ଛାୟ ଏବଂ
ଏ ଯମୁନା କୂଳ

ଦେହେ ମୋ ଫୁଟାଇ ଦେଲେ
କଦମ୍ବ କେଶର
କାନ୍ଦୁଛି ମୁଁ ଉଦ୍ଦାଳକ
ଜନ୍ମ ଜନ୍ମାନ୍ତର ।

ସପ୍ତଶ୍ରୀ ତୁ ଧାର୍ନା ରେ
ମୟୂର ତୁ ନାଚ୍ ନା
ବିଡ଼ମ୍ବିତ ଏ ତନୁରେ
ଇନ୍ଦ୍ରଧନୁ ଆସ୍ ନା ।

ମୁଁ ବୁଲିବ ଏ ବର୍ଷାରେ
ବୋଇତ ବନ୍ଧାଇ
ମୁଁ ବୁଲିବ ମୋ ମୁଣ୍ଡରେ
ପକ୍ଷିଆ ଘୋଡ଼ାଇ

ମୋ ଦେହରୁ ଲିଭିବ ଶୋଷ
ଭେଦୁଅ ଖରାରେ
ମୋ ମନର ଜ୍ୱାଳା ଯେତେ
ଜହ୍ନ ଓ ତାରାରେ
ମୁଁ ଚଢ଼ିବି ଉଚ୍ଚୈଶ୍ରବା
ଯଦି କେତେବେଳେ
ମୁଁ କହିବ ପିବାଗୁଲ
ଏ ଫୁଲ ମଞ୍ଜିରେ ।

ମୋତେ ବଡ଼ ବ୍ୟସ୍ତ କରେ
ଭାଦ୍ରବର ଜହ୍ନ
ଆକାଶରେ ଶିର ପିଟେ
କେତେ ଅପରାହ୍ଣ

ମୁଁ ଡାକିଲି ମୟୂରରେ
ମୋ ଘରକୁ ଆ
ମୁଁ କହିଲି ମୟୂରରେ
ନାଚ ଦେଉଥା ।

ମୋ କଥାରେ ହସିଦେଲେ
ଗ୍ରାମ ନଗ୍ର ବନ
ମୋ ଆଖିରେ ଉଡ଼ିଗଲେ
କେତେ ଶଙ୍ଖଚିଲ ।

ମୁଁ କିନ୍ତୁ ପାରେନା ଆହା
ମୟୂରଟି ଧରି
ମୟୂର ଡାକେ ହସନ୍ତି
ସକଳ କୁମାରୀ ।

ଯେଣୁ ଏ ମୟୂର ଜମା
ପୋଷା ମାନେ ନାହିଁ
ହେ କୁମାର ମୁଁ କାନ୍ଦୁଛି
ଏ ମୟୂର ପାଇଁ ।

ଏ ମୟୂର ପୁଚ୍ଛ ପିନ୍ଧି
ନାଚିଥିଲା କାହ୍ନୁ
ଏ ମୟୂର ପୋଷିଥିଲେ
ବଇଦେହୀ ଯେଣୁ

ତେଣୁ ମୁଁ ମୟୂର ବାନ୍ଧେ
ଦିନ ଦ୍ୱିପ୍ରହରେ
ତେଣୁ ମୁଁ ମୟୂର ଧରେ
ଜହ୍ନ ଆଲୁଅରେ ।



# ବଳୀବର୍ଦ୍ଦ ଉପାଖ୍ୟାନ



କାଳିଆ ବଳଦ ଗଳାରେ
ହାଣ୍ଡି ଘୁଡ଼ୁ ଘୁଡ଼ୁ କଲାରେ ।

ଏ ବଳଦ ଭାଙ୍ଗିଦିଏ
ମୋ ହାଣ୍ଡି କୁଣ୍ଡେଇ
ଏ ବଳଦ ବୋହିନିଏ
ଆମକୁ ମୁଣ୍ଡେଇ ;

ତେବେ କାହିଁ ଡର ତୁମେ
ବଳଦ ଦେଖିଲେ
ତା ଦେହର ସରୁ ଲୋମ
ଗୋଟାଏ ଖସିଲେ ।

ତେତିଶ କୋଟି ଦେବତା
ଏ ବଳଦ ଦେହେ
ଲୁଚି ଛପି ରହିଥିଲେ
ଅସୁରଙ୍କ ଭୟେ ।

ତେଣୁ ଏ ବଳଦ ଥିଲେ
ଜମା ଭୟ ନାହିଁ
ତା' ଲାଞ୍ଜ ଧରିଲେ ମୃତ୍ୟୁ
ପାଖ ପଶେ ନାହିଁ ।

ମୁଁ ତେଣୁ ପୋଷିବି ଏବେ
ବଳଦ କେତୋଟି
ଏ ସହର ଉପକଣ୍ଠେ
ସେ ଯେଉଁ ଗାଆଁଟି

ସେ ଗାଆଁର ଧାନଖେତ
ସୁନାର ଫସଲ
ସେ ଗାଆଁର ଦୁବ ଘାସ
କାଚ କେନ୍ଦୁ ଜଳ ।
ଦିନେ ମୁହିଁ ଦେଖିଥିଲି
ନରେଲା ପହରେ
ଥୋରିଆ ବଳଦ ଚଢ଼ି
ଯାଉଥିଲି ବେଳେ ।

ହେ ଈଶ୍ୱର, ହେ ଭୈରବ
ହେ ନାରୀ ପୁରୁଷ
ତୁମେ ମୋତେ ଚାହିଁଥିଲ
ହୋଇ ହସ ହସ ।

ମୋ ବଳଦ ଖୁରା ଧୂଳି
ଆକାଶେ ଉଡ଼ିଲେ
ଶଗଡ଼ିଆ ଗୀତ ଯେତେ
ମେଘ ପାଲଟିଲେ ।

ମୁଁ ଗୁଡ଼ଳ ଭଠାମାଟି
ମୁଁ ଛାଡ଼ଳ ଗାଆଁ
ମୋ ଦେହର ନଈକୂଳେ
କେତେ ଚିହ୍ନା ନାଆଁ ।

ହଠାତ୍ ଆସିଲେ ଯଦି
ମାଟ୍ଟି ଅନ୍ଧାରରେ
କମିତ୍ତି କରନ୍ତ ମନା
ଫୁଲ ଫୁଟା ବେଳେ ।

ପୁଣ୍ୟ ନଗ୍ର ଶଙ୍ଖ କ୍ଷେତ୍ର
ଗୁପ୍ତ ବୈକୁଣ୍ଠରେ
ସ୍ତୁତି ପାଠ ମନ୍ତ୍ର ପାଠ
ଯଦି ବା ସରିଲେ,

ସେ ଯେବେ ଆସିଲା ଫିଙ୍ଗି
ଲବଣ ଚଉଁଷ
ସମୁଦ୍ରର ହାଓ୍ୱା ଆଉ
ସଦ୍ୟ ସ୍ନାତା ନାରୀ
ତୁମେ ବୋଧେ ଲୋଡ଼ୁଥିଲ
ମଦନ ଗୋପାଳ
ବୃନ୍ଦାବନ ଗାଈ ଗୋଠ
ସେ ଯମୁନା କୂଳ ।

ଆଜିର ଏ ଦ୍ୱିପ୍ରହରେ
ଝିଣ ଗୁଡ଼ ତଳେ
ଦୁର୍ବସହ ବଳବର୍ଦ୍ଧ
ପାକୁଳ ଭିତରେ ।

ହଜିଯାଏ ତୁମ ହସ
ହଜେ ମୋର ମନ
ବଳବର୍ଦ୍ଧ ଗାଡ଼ି ଟାଣେ
ଯଦିଓ ମଧ୍ୟାହ୍ନ ।



# ସହରରେ ବର୍ଷା

ଆଖି ନାହିଁ କାନ ନାହିଁ
ବାଜିଲେ ମୋ ଦୋଷ ନାହିଁ ।

କେମିତି ହୋଇବ ଦୋଷ
ମୋ ହାତ ବାଜିଲେ
ଗଛ ବୃକ୍ଷ ଗିରିନଦୀ
ସମସ୍ତେ କହିଲେ ।

ସମସ୍ତେ ହୋଇବା ଠିଆ
ରେଲ୍ ଷ୍ଟେସନରେ
ସମୟୂର ପାଇକାଳ
ନୃତ୍ୟ ସରିଗଲେ ।

ତୁମେ ନଷ୍ଟେ ଖୋଜୁଥିବ
ବନ ହଂସୀଟିରେ
ପାହାଡ଼, ଝରଣା ଅବା
ନିସ୍ତବ୍ଧ ଗଳିରେ ।

ଝିପାର୍ଟି ପିକନକ୍
କମ୍ପା ରେସ୍ତୋରାଁରେ
ମୋ ଦେହର ନଆଁ ଯେତେ
ବନ ପାହାଡ଼ରେ ।

ହେ ଧରନି ହେ ଆକାଶ
ହେ ଦ୍ୟାବ୍ୟା ପୃଥ୍ବି
ମୋ ଦେହରେ ଫୁଲସଭି
ତୁମ ନାମ ସ୍ବର ।

କିପରି ଭୁଲିବ କହ
ଏଇ ମୁହୂର୍ତ୍ତରେ
ଭାଗ୍ୟାଧିପ ବୃହସ୍ପତି
ଯଦି ପଞ୍ଚମରେ ।
ହାତ ନାଇଁ ଗୋଡ଼ନାଇଁ
ଯଦି କିଛୁ ନାଇଁ
ତୁମେ କିପାଁ ଚୁହିଁଅଛ
ହେ ଜଗତ ସାଇଁ ।

ସମୁଦ୍ରର ନୀଳ ଜଳ
ତୁମ ନୀଳ ଆଖି
ଏ ଆକାଶ ନୀଳଚକ୍ର
ତୁମର ପିନାକ,

ଚୁହିଁଲେ ଲାଗଇ ଭୟ
ମୋତେ ବେଳେ ବେଳେ
ଜନାକୀର୍ଣ୍ଣ ଏ ସହର
ନିସ୍ତବ୍ଧ ଗଳରେ ।

ମୁଁ ଧାଇଁଛି ଅନେଶ୍ୱାସୀ
ଡାକି ତୁମ ନାଆଁ
ମୋ କୋଠରି, ମୋ ପୃଥିବୀ
ଆଉ ମୋର ଗାଆଁ ।

ଅଚିହ୍ନା ଦେଖା ଦେଲେ
ପୁଣି ଚାଲିଗଲେ
ଚିହ୍ନା ମୁହଁ କେତେ ପୁଣି
ଅଚିହ୍ନା ହୋଇଲେ ।

ମୁଁ କାନ୍ଦିଲି ଠିଆ ହୋଇ
ଜହ୍ନ ଆଲୁଅରେ
ଓସ୍ତ ଗଛେ ବୁଢ଼ିଆଣୀ
ଜାଲ ଭିଡ଼ୁଥିଲେ ।

ହଠାତ୍ ଆସିଲା ବର୍ଷା
ଏଇ ସହରରେ
ମୋ ଦେହରେ ଉଜ୍ଜୟିନୀ
ସିପ୍ରା ମୋ ମନରେ ।
ମୁଁ ଡାକିଲି ନାମଧର
ହେ ଦ୍ରୋଣ ପୁଷ୍କର
ସମର୍ତ୍ତିକ, ଆବର୍ତ୍ତିକ
ହେ ପ୍ରିୟ ଦୋସର ।

ଝରିପଡ଼ ଝରିପଡ଼
ରାଉରକେଲାରେ
କ୍ରେନ୍, ବୁଲଡୋଜର କମ୍ପା
ମୋ ମନ ରାସ୍ତାରେ ।

ମୁଁ ଭିଜିବି ଏ ବର୍ଷାରେ
ଯନ୍ଦ ତୁମ ପାଇଁ
ମୁଁ ବୁଲିବି ଏ ବର୍ଷାରେ
ଛନ୍ଦ ଗୀତ ଗାଇ ।

ହାତ ନାହିଁ ଗୋଡ଼ ନାହିଁ
ଯନ୍ଦ କିଛି ନାହିଁ
ମୋତେ କପୁଁ । ଅନାଇଛ
ହେ ଜଗତ ସାଇଁ ।

ଏ ସହର ଏ ନଗର
ଏଇ ବର୍ଷାକାଳ
ବିଡ଼ମ୍ବିତ ମୟୂର ଓ
କଦମ୍ବ କେଶର ।

ସବୁଯନ୍ଦ ଲୁଚିଯିବ
ଏ ଗଳି କନ୍ଦରେ
ମେଘନାଦ ଦୋସ୍ତ ଯେତେ
ମେଘ ଦେଖୁଥିବେ ।



## ଜହ୍ନ

ତୁମେ ଯଦି ଆକାଶ ମିରଗ
ଧାଇଁ ବୁଲ ଦଗ ଓ ବଦଗ
ହଜି ଗଲେ ମନର ସ୍ୱରଗ
ମେଘେ ଖାଲି କଅଁଳିଆ ଦୁବ—

ହାତେ ଫିଙ୍ଗି ଫୁଲର ପାଖୁଡ଼ା
ଅବା ଚର କାଗଜର ବଡ଼ା
ଆକାଶର ନୀଳ ପଡ଼ଆରେ
ଗ୍ରସି ଯେବେ ଫୁଲ ନଦ ମାରେ ।

ଚିହ୍ନ ଦେହାଇ ଫୁଟେ ତୁମ କଥା
ପ୍ରୀତି ଆଉ ବରହର ଗାଥା
ହସ ଆଉ ରସର ଫସଲ
ବ୍ୟଥା ସାଥେ ମମତାର ମୂଳ ।

ଅନାସକ୍ତ ଦୁର୍ବଳ ଦେହରେ
କଳା ଆଖି ଯଦି ତୁମ ଖୋଲେ
ରଜନୀର ପଣତ କାନରେ
ତୁମେ ଯଦି ଶୋଇପଡ଼ ଧୀରେ ।

ତୁମ ସ୍ୱପ୍ନ ହୁଏ କେତେ ଫୁଲ
ଝକ୍ ଝକ୍ ଗାଲେ ଢ଼ଳ ଢ଼ଳ
କେତେ ନୂଆ ହସର କେଶର
ଡାକ ଆଣେ କାମନା-ଜୁଆର ।

ଅସ୍ତ ଆଉ ଉଦୟର ଛରେ
ସ୍ଥିତି ଆଉ ବ୍ୟାପ୍ତି ମୁହାଣରେ
ଆମେ କରୁ ନୂଆ ଆୟୋଜନ
ଆମେ ଗାଉଁ ଦେହର ଭଜନ ।

ଯଦି ସରେ ଆମ ଅଭିମାନ
ଯଦି ସରେ ଫେଡ଼ାଣ ମିଶାଣ
ବାଲି ଶେଜେ ଜହ୍ନ ବୁଡ଼ିଗଲେ
ଏ ପୃଥିବୀ କୟୁଁ । ତାରେ ଝୁରେ ?



# ସମୁଦ୍ର

ସମୁଦ୍ର ଲହରୀ ଆସେ ମୋ ମନର ବାଲିକୁଦ ଛୁଇଁ
ମୋ ଦେହର ଚହଲବାଲେ ନୂଆ ସୂର୍ଯ୍ୟ ହୋଇ ।
ଧାଡିକାରେ ଦେଖେ ଆହା ତୁମ ନୀଳ ଆଖି ଆଲୁଅରେ
ଆକାଶ ମିଶିଲା ଛନ୍ନେ ପୃଥିବୀର ନୀଳ ପାହାଡ଼ରେ ।

ହେ ଅଗସ୍ତି, ହେ ସମୁଦ୍ର, ମୋ ମନର ଯେତେ ନୀଳ ଢେଉ
ଅନ୍ତରୀକ୍ଷ ସ୍ୱପ୍ନଗର୍ଭା ଆକାଶର ଅନନ୍ତ ପ୍ରବାହ
ଯଦି କେବେ ମୁକ୍ତି ମିଳେ ମୋ ମନର ବିଦେହ ନଗରୁ
ଭଲ ଚନ୍ଦ୍ରକାନ୍ତ ଗୁଡ଼ି ଜହ୍ନ ଆଲୁଅରୁ ।

ଯଦିବା ଲହରୀ ଆସେ ପବନରେ ଶିତେଇ ଚିତେଇ
ଆଖିରେ ସମୁଦ୍ର ଆଉ ସମୁଦ୍ରରେ ନଈ ।
ହେ ପର୍ଜନ୍ୟ, ମୋ ମନର ଆଲୋକ ଅନ୍ଧାର
ଦେହର ବିଜୁଳି ଆଉ ମୋ କଣ୍ଠର ସ୍ୱର ।

ହଜିଯାଏ ସନ୍ଧ କେବେ ନୀଳ ପାହାଡ଼ରେ
ତଦାତ୍ମିକ ଭାବେ ମଗ୍ନ ପ୍ରାତ ପ୍ରହରରେ
ଯେତେଦୂରେ ଚାହିଁଦେଲେ ଆକାଶ ପୃଥିବୀ
ସବୁଠି ସମୁଦ୍ର ଆଉ ମୋ ଦେହର ସାମୁଦ୍ରିକ ଛବି ।



# ଗୋଟିଏ ଦିନର କବିତା

ନାଲି ଗୁଲୁ ଗୁଲୁ
ସାଧବ ବୋହୂଲୋ
ସାଧବ ବୋହୂ
ମାଳ ପଡ଼ିଆରେ
ସଞ୍ଜ ସକାଳରେ
କାହିଁକି ଯାଉଲୋ
କାହିଁକି ଥାଉ ।

ଶୀତ ହେମାଳରେ
ଦେହ ପାଖୁଡ଼ାରେ
ଉତ୍ତାପ ନେଇ
ଥେଇ ଥେଇ ନାଚ
ଭୁଲିଗଲେ ଦେଖେ
ଭୁମରି ଛଇ ।

ହସ ହୁଏଁ ଖରା
ଦେହ କଅାଁରେ
ଫୁଟଇ ତାରା

ସଞ୍ଜ ସକାଳରେ
କୁନ ପିଲା ପରି
ତୁମେ କ ଚୋରା ।

ମେଘ ଶେଜ ପାରି
ଲୁଲୁବାୟୁ ଗୀତ
ଆକାଶେ ଗାଇ

ମୋ ମନ ସମୁଦ୍ର
ଫେଣକାଟି ତୁମେ
ଆସିଲ ନାଇଁ ?

କାନ୍ଦ ହେଲ ଫୁଲ
ଦେହ ଧରଣୀରେ,
ଚଇତ ନାଚ

ହାଇ ମାରି ଦେଖେ
ଧୂଳିଘର ଆମ
ସବୁତ ମିଛ ।,,

ତାର୍ ଆଉ ଫୁଲ
ଫୁଲ ହୁଏ ତାରା
ଦେହ ମେଘେ ମୋର
ମାଳ ନୀଳ ଖରା
ମେଘ ଆଉ ମନ
ଆଖି ଆଉ ଜହ୍ନ

ହଜିଯାଏ ପୁଣି
ତୁମରି ଛାଟରେ
ନାଲି ଗୁଲି ଗୁଲୁ
ସାଧବ ବୋହୂ ଲେ
ଆକାଶରେ କିଏ
ଲୋତକ ଝରେ ।



# ଗୋଟିଏ ଗଛ

ଛେଳ ଛୁଆଟିକୁ ଦେଖ ଲେ
ମେଷ ଛୁଆଟିକୁ ରଖ ।

ଏ ଦେହ ଫଗୁଣେ
ଶୁଭିଲଣି ସଢ଼
କେଉଁ ନଈକୂଳ ଡାକ ।
ଦେହ ହୁଏ ନଈ
ଆଖି ହୁଏ ମାଛ
ମନ ହୁଏ ସଢ଼
ଗୋଟିଏ ଗଛ ।

ଚକ୍ ଚକ୍ ଭୁମ
ଦେହ ବାଲି କୁଦେ
ଅଳସ ବେଳାରେ
ଖେଳେ ମୋ ମାଛ ।

ଘାସ ହୁଏ ହସ
ମୋ ମନ ସାରସ
ପାଲଟିଇ ସିନା
ଗୋଟିଏ ହଂସ ।

ଛେଳ ଛୁଆଟିର
କନ କନ ଆଖି
ମେଷ ଛୁଆଁଟିରେ
କହୁଛି ଡାକ

ଦେଖ ନଈବାଲି
ସୁନା ଝିଲମିଲ
ଗଛ ଅନ୍ତରାଳେ
କନକ ଦୋଳି ।

ନଈ ଆଉ ମାଛ
ହଂସ ଓ ସାରସ
ସ୍ବପ୍ନ ସାଗରରେ
କାହିଁ କେଉଁ ଗଛ ?



# ବସ ଅପେକ୍ଷାରେ

ବସ ଅପେକ୍ଷାରେ
ସୂର୍ଯ୍ୟର ଉଦୟ ପରି
ଗୁହିଁ ରହିବାରେ,
କ୍ଳାନ୍ତ ଅଛି ,
ଆନନ୍ଦ ବି ଅଛି,
ଯୋଡ଼ ଯୋଡ଼ ମାଳ ପଦ୍ମ
ଅନେଇ ରହିଛି ।

ହଠାତ୍ ଆସିବ ବସ
ନାଲ ନାଲ ଧୂଳି ଖେଳି
କଲେଜ ଛକ୍‌ରେ;
ଆଖିରେ ଅନ୍ଧାର ଲେସି
ଢନ ଦ୍ୱି ପ୍ରହରେ !

ଚୂପ୍‌ଚୂପ୍ କଥା ସାଥେ
ମୃଦୁ ଗୁଞ୍ଜରଣ

ଈଷତ୍ ଆଖିର ହସ
ଭେଟେ ସମ୍ଭାଷଣ;
ଏ ବସରେ, ପଦ୍ମ ଫୁଟେ
ସ୍ୱାସ୍ଥ୍ୟକଢ଼ି କଇଁ ବଣ
ବହ୍ନନ ବି ଉଠେ ।

ବସନ୍ତି ଆସଇ ଡେଇଁ
ଗାଆଁ ବିଲ ବଣ
ସହରର ଉପକଣ୍ଠେ
ଏ ମର୍ତ୍ତ୍ୟର ଚୈତ୍ର ରଥ
ଏ ମାଟିର ପୁଷ୍ପକ ବିମାନ ।

କେତେ ଆତ୍ମା ବସିଛନ୍ତି
ବସ ଅପେକ୍ଷାରେ,
ମନରେ ଆଲୁଅ ଜାଳି
ବେଳେ ଅନ୍ଧାରରେ
ଜେତବନେ, ନୈମେଷା ବା
ମଳାଦ୍ରି କନ୍ଦରେ
ତଥାପି ଗୋଧୂଳି ହସେ
ସହର ଗଳିରେ ।



# ପିତୃ ତର୍ପଣ

କୌଣସି ବାଟରେ ଅଗ୍ନିକ ଗୋଡ଼ ଖସିଗଲେ
ଏ ଆକାଶ, ଏ ପୃଥିବୀ ଏବଂ ଏ ସହର
ସର୍ବେ ହେବ ଭସ୍ମାସୁର ସର୍ବେ ବୈଶ୍ୱାନର
ମୋ ଦେହକୁ, ମୋ ଆତ୍ମାକୁ ହେ ପ୍ରଭୁ ଉଦ୍ଧର ।

ମୋ ଅସ୍ତିତ୍ୱ ହଜିଯାଏ ବେଳା ଭୂମିପରେ
ମୋ ଚେତନା ଉଡ଼ିଯାଏ ନୀଳ ଆକାଶରେ
ମୁଁ ପାଳିଥିଲେ ପୋଷାପକ୍ଷୀ ତୁମ ପିଞ୍ଜରାରେ
ମୁଁ ଯଦିବା ଛନ୍ଦି ହୁଏ ସମସ୍ତ ଜାଲରେ
ମୋତେ ପ୍ରଭୁ ରକ୍ଷାକର ଊର୍ଣ୍ଣନାଭ ଜାଲୁ
ସମୁଦ୍ର ସ୍ନାହାନ ପରେ ଅନ୍ତତ ଏ ଲୋକ ଅହଲ୍ୟାରୁ ।

ମହୁଲ ଧରିବ ଫୁଲ ଯଦି ପ୍ରଭୁ
ତୁମ ପାଇଁ ଆଉ ମୋର ପାଇଁ
ଦୂର ଏବଂ ଅଦୂରର ରାଧା ଆଉ ଚନ୍ଦ୍ରସେଣା ପାଇଁ

ମୋତେ ବାରେ ରକ୍ଷାକର, ରକ୍ଷାକର ମୋ ଦେହେ ସତ୍ତ୍ୱକୁ
କବଚ କୁଣ୍ଡଳ ଦେଇ ରକ୍ଷାକର ବୃହନ୍ନଳା କ୍ଲୀବ ଅର୍ଜୁନକୁ

ଏ ସମୁଦ୍ର ଜାଣେ ପ୍ରଭୁ କୁହୁକ ମନ୍ତ୍ରର
ନୀଳ ଜଳ, ନୀଳ ଶାଢ଼ୀ, ଆଉ ନୀଳ ଘର
ତୁମପାଇଁ ମୋର ପାଇଁ ଅନନ୍ତ ଶପ୍ନ ପାଇଁ
ଲୋଡ଼ାପଦ୍ମ ନୀଳ ଜ୍ୟୋତି ବରୁଣ ନଗ୍ରର

ମୁଁ ପିଇବ ଗଣ୍ଡୁଷରେ ସାତ ସମୁଦ୍ରକୁ
ମୋ ଦେହର, ମୋ ଆତ୍ମାର ଯମୁନାମାନଙ୍କୁ
ମୁଁ ଖୋଜିବ ସାତଦ୍ୱୀପ ସାତୋଟି ଫରୁଆ
ସାତକୁମ୍ଭ ଜଳ ଏବଂ ସାତୋଟି ମରୁଆ ।

ମୁଁ ଡାକିବ ନକ୍ଷତ୍ରଠେ ହେ ସପ୍ତ ପୁରୁଷ
ଜଳରେ ତର୍ପଣ କରେ ତୁମେ ବେଗେ ଆସ ।
ପିତୃପକ୍ଷେ ଆସ ତୁମେ ମୋ ପଯ୍ୟା କାଠିରେ
ମୋ ଚେତନା, ମୋ ସଂବିତ୍ ଅଶ୍ୱତ୍ଥ ଡାଳରେ
ମୁଁ ବସିଛି ତୁମପାଖେ ବାଲି ଗଣି ଗଣି
ମୋ ଗୋଡ ହଠାତ୍ ଖସେ ଏନଷ୍ଟ ମୁହାଣି ।



# ମାଛ

ତମସା ନଈରେ ସେ ଦିନ ମୁଁ ସ୍ନାନସାରି
ସଂଧ୍ୟା ଏବଂ ସୂର୍ଯ୍ୟସ୍ତୁତି କରୁଥିଲି ବେଳେ,
ହଠାତ୍ ଗୋଟିଏ ମାଛ ହାତ ପାପୁଲିରେ ।

ମୁଁ ତଟସ୍ଥ, ସ୍ତମ୍ଭୀଭୂତ ଅବା ବିଡ଼ମ୍ବିତ
ଆଜାନୁଲମ୍ବିତ ତନୁ ସୁବର୍ଣ୍ଣ ବୋଇତ
ପରିଦିନେ ଭସୁଥିଲି ବାଙ୍କି ମୁହାଁଣରେ
ଟିପାର୍ଟି ପିକ୍‌ନିକ ଚାଲୁଥିଲି ବେଳେ ।

ଆମେ ସବୁ ଗଣୁଥିଲୁଁ ଆକାଶର ତାରି
ସାମୁଦ୍ରିକ ମାଛ ଯେତେ ବରଷାର ଧାରି
ପରିଦିନେ ପଡ଼ୁଥିଲେ ଆମ ଅଗଣାରେ
ଗୋପ ଓ ଦ୍ୱାରକା ଲୀଳା ସରିଗଲି ବେଳେ ।

ମୁଁ ଡାକିଲି ମାଛମାନେ ଆସ ମୋର ସାଥେ
ଖେଳଇରେ ଧରିଦିଅ ମୋର ଟିକ ହାତେ ।

ସଫରଚି ଡେଇଁ ଗଲା ସାତ ସମୁଦ୍ରକୁ
ମାଛଟିକ ଡେଇଁ ଗଲା କାରୁଣ୍ୟ ଜଳକୁ
କାନ୍ଦୁଥିଲା ପୁଅ ମୋର ସାତ ବରଷର
ବନ୍‌ଶୀରେ ମାଛ ଯେତେ ନଖୋଜ ତାହାର ।

ମୁଁ ଡାକଲି ହେ ନାଉରି, ହେ ପ୍ରିୟ କୈବର୍ତ୍ତ
ବୈବସ୍ୱତ ମନୁ ଏବଂ ସୁବର୍ଣ୍ଣ ବୋଇତ
ମୋତେ ବାରେ ରତ୍ନାକର ଅକାତ ପାଣିରୁ
ବୃଷ୍ଟିପାତ ଝଡ଼ ଏବଂ ଘନ ତମିସ୍ରାରୁ ।

ମୁଁ ଅତି କାକୁସ୍ଥ ହୋଇ ଆସେ ତୁମ ପାଶେ
ମୋ ଦେହ, ଡାକରୁ ନେଇ ଏ ସମୁଦ୍ର ହସେ
ଆସ ତୁମେ ଚକାଡ଼ୋଳା ହେ ମୀନ କେତନ
ମାଛ ଯେତେ ପହଁରନ୍ତି ପୁଣି ବୁଡ଼ ଯା'ନ୍ତି
ଖଣ୍ଡ ଖଣ୍ଡ ମେଘ ଯେହ୍ନେ ମୋ ଚକିତ ମନ ।

ଧଳା ଧଳା ଚକ୍ ଚକ୍ ମୋ ଆଖିର ମାଛ
ସ୍ମୃତି ଏବଂ ସ୍ୱରଭର ନବୋଳା ପାବଛ
ପର ପୁଣି ନାଚୁଥିଲେ କାଠଯୋଡ଼ି କୂଳେ
ସାହା ମାଂ ସାହା ମାଂ ଅଯୋନ ସମ୍ଭୂତ
ସ୍ୱର୍ଣ୍ଣ ମତ୍ସ୍ୟ ଡେଇଁ ଯାଏ ହାତ ପାପୁଲିରେ ।



# ଗରୁଡ଼ ପ୍ରତି

ଜୀବନର ଯାତ୍ରାପଥେ
          କେତେ କଳା ଗୁଇ
ହେ ଗରୁଡ଼, ସଖା ମୋର
          ପଡ଼ିଲକି ଶୋଇ ।
ଆକାଶରେ ମେଘ ନାଇ
          ମେଘ ମୋ ମନରେ
ଏ ଦେହର ବାଲି ଝଡ଼
          ନୈମେଷା ବନରେ ।
ସବୁ ଯଦ୍ଧ ଶେଷ ହୁଏ
          ସ୍ୱପନ ଭିତରେ
ତକ୍ଷକ ମରିନ ଜମା
          ତୁମରି ଭୁଲରେ ।

ହେ ଗରୁଡ଼ ସଖାମୋର
        ପଡ଼ନା ଘୁମାଇ
ଗୋପରୁ ଦ୍ୱାରକାଯାଏ
        ବହେ ଅଶ୍ରୁନଈ
ଆକାଶରେ ଭାସିବୁଲେ
        କଳା କଳା ଗୁଈ
ମୋ ସ୍ମୃତିର ମୁହାଣରେ
        ନଈ ନାଳ ହୋଇ ।

ସବୁଠି ମୁଁ ଘୂରିବୁଲେ
        ପୁଣ୍ଡରିକ ରୂପେ
ସପନ ସଉଧ ଡେଇଁ
        କେଉଁ ଶିଳା ସ୍ତୂପେ
ଯଦି ମୁଁ କଳନା କରେ
        ବାସୁଦେବ ନାହିଁ
ମୋ ଗରୁଡ଼ ପକ୍ଷ ଝାଡ଼େ
        ଯଦି ତୁମ ପାଇଁ ।

ଏ ଦେହର ଉପକଣ୍ଠେ
        ବିଦଗ୍ଧ ବସନ୍ତେ
ଯଦିବା ଗରୁଡ଼ ଫେରେ
        ମଳନ ଦିନାନ୍ତେ
ଭାଙ୍ଗିଯାଏ ସ୍ୱପ୍ନ ମୋର
        କରୁଣ ଲଳିତ
ହେ ଗରୁଡ଼ ତୁମେ ହୁଅ
        ଯଦି ଦାରୁଭୂତ ।



# ମୃତ୍ୟୁର ଉପକଥା

କାଲି ବରାଡ଼ି ରାଡ଼ି ରାଡ଼ି
ପକାଇବୁ ଶବ ବାଡ଼ି
ପଳାଇବୁ ରାଜ୍ୟ ଛାଡ଼ି ।

ଏ ରାଜ୍ୟରେ ହସ କାନ୍ଦ
ସ୍ୱପନ ବିଭ୍ରମ
ଶୁଣରେ ବରାଡ଼ି ମୋର
ଗୋଟିଏ ବଚନ ।

ମୋ ଦେହର ଉପକଣ୍ଠେ
ବେତସ ବନରେ
ମଧୁ ଚଇତାଳି ପବ
କେବେ ଆସି ଫେରେ ।

ମନେ ମୋ ଉଠଇ ଢେଉ
ଦେହ ଗୃହପାଖେ
କାମନାର ଉପକୂଳେ
ଜହ୍ନ, ତାରା ଡ଼ାକେ ।

ଦେହେ ମୋ ଲାଗଇ ସ୍ୱପ୍ନ
ଫୁଲ ଫୁଟା ବେଳ
କେତେ ବାଲିଚର କେତେ
ସ୍ମୃତିର ସାଗର ।

ଏ ଦେହରେ କେତେ ଝଡ଼
କେତେ ଯେ ବତାସ
ସକାଳର ଶ୍ରେଷ୍ଠ ମୁହଁ
ଖିଲି ଖିଲି ହସ ।

ସବୁ ହଜେ, ସବୁ ଭୁଲେ
ସମସ୍ତ ଖରାରେ
ବିସ୍ମୃତିର ସାତତାଳ
ଗମ୍ଭୀର ହ୍ରଦରେ ।
ସେତେବେଳେ ହେ ବଡ଼ାଳ
ତୁମ ସାଦା ରୂପ
ତୁମରି ଜଳନ୍ତା ଆଖି
ତୁମରି ପ୍ରକୋପ

ଏ ଜୀବନେ ଅଗୁନକ
ପ୍ରହେଳିକା ପରି
ହଠାତ୍ ଶ୍ରାବଣୀ ମେଘ
ଆକାଶେ ଯେପରି
ଲୁଇଯାଏ, ଯାତ୍ରାପଥେ
ମୁଁ ଯେ ଉପସ୍ଥିତ
'ନଃଶେଲଗୁ ଡାଳ ମୋର
ଶୂନ୍ୟ ଲାଗେ ଡାଳ ।'
ହେ ବଡ଼ାଳ ବନ୍ଧୁ ମୋର
ଅକ୍ଷର ଅଚ୍ୟୁତ ।

ଏ ଜୀବନ ସତ୍ୟ ଯଦି
ମୃତ୍ୟୁ ଦୂରେ ରହୁ
କାନ୍ଦନା ଉଦ୍ଧବ ମୋର
ଛୁଡ଼ ମୃତ୍ୟୁଭୟ ।



# ମୋ ପୃଥିବୀ ଶୋଇରହେ

ଅଇଲାଣି ବଳେଇ
ମୂର୍ଛାଯିବ ପଳେଇ

ମୋ ମନର ଅମାରରେ
କେତେ ଧନ ଦରବ
ହଜିଲା ସ୍ମୃତିର ଯେତେ
କାଉଡ଼ିଆ ବିଭବ ।

ସବୁ ଆଜ ଅସ୍ତପଥ
ସବୁ ଆଜ ଲୁପ୍ତ ପଥ
ଏ ମନର ଦ୍ୱାରକା,
ସମପୂର ଉପକଣ୍ଠେ
ତଥାପି ଲହଡ଼ି ଉଠି
ଦେହର ହେମାଳ ଭଙ୍ଗେ
ତୁମର ଏ ଭୂମିକା ।

କ୍ଳାନ୍ତ ଆଉ ଶ୍ରାନ୍ତିର
ବ୍ୟାପ୍ତି ଆଉ ଘାପ୍ତିର
ଜୀର୍ଣ୍ଣ ଦେଉଳରେ
ଯଦିବା ପଡ଼ଇ ଖସି
ଯଦିବା ଉଆଁଇ ତାରି
ଜୀବନର, ନିସ୍ତବ୍ଧ ପ୍ରହରେ ।

ଆକାଶର ରଙ୍ଗମାଖି
ଏ ପୃଥିବୀ କେତେକାଳୁ
ଶୋଇଛି କପାଇଁ;
ଉବ ଉବ ମୀଳ ଆଖି
ଢୋଲ୍ ଢ଼ୋଲ୍ ଚକା ଆଖି
ସଚକିତ ହରିଣର
ପକ୍ଷ୍ମୋଳିତ ଆଖି
ସବୁ ଯଦି ତୁମ ପାଇଁ
ତୁମ ପାଇଁ ରହିଛି ଅନାଇଁ ।
ଯଦିବା ପବନ କାନ୍ଦେ,
ଯଦି କାନ୍ଦେ କଅଁଳ ପିଲ୍ଟି
ମାଆର କୋଳକୁ ଆହା
ସୁମୁରି ସୁମୁରି,
ଅମାନିଆ ପିଲପରି
ଅବା ରାହା ଧରି
ତଥାପି ଜୀବନ ଆମ
ପଡୁନି ଲେଉଟି
ଏ ଜୀବନ ସରହଦ ଡ଼େଇଁ
ତୁମ ହସ ଶୁଭୁଛି ସବୁଠି ।

ଏ ଦେହରେ ରଙ୍ଗ ନାହିଁ
ରଙ୍ଗ ନାହିଁ ପାହାଡ଼େ ପାହାଡ଼େ

ତେବେ ବି ମୃତ୍ୟୁରେ ନାଚେ
ମୋ ମନର ଅତଳ ପାହାଚେ
ସ୍ଲେଟ୍‌ରୁ ଲିଭିଗଲା ପରେ
ଗାର ଟାଣି ଟାଣି···
ଅଲଅଲୀ କେଉଁ ରଜା ଝିଅ
ଆହା ଖାଲି ସ୍ୱପନରେ ବଞ୍ଚେ ।

ଏ ଜୀବନ ଯଦି ମୋର
ଅମୃତ ସୋପାନ ?
ଏ ଜୀବନ ଯଦି ମୋର
ମୃତ୍ୟୁର ଅଧୀନ ?
ତେବେ କମ୍ପା ଏ କୃଚ୍ଛ୍ର ସାଧନ
ମୋ ଆତ୍ମାର
ମୁକ୍ତି ଏବଂ ବିକଳ କ୍ରନ୍ଦନ ?
ତଥାପି ମୁଁ ଶୋଇ ରହେଁ
ସ୍ୱପନ ଭିତରେ
ଶିଶୁ ମାର୍ଜାରଟି ନାଚେ
ଇନ୍ଦୁର ଆଗରେ ।



# ଏ କି ଫୁଲ

ଏ କି ଫୁଲ ସେ କି ଫୁଲ
ଅରୁଆ ମରୁଆ
ଆକାଶରେ ଭାସେ ମୋର
କୁନ୍ଦନ ଫରୁଆ ।

ମୋ କୁନ୍ଦନ ଫରୁଆରେ
ନାଲି ନେଳି ଶାଢ଼ୀ
ପଢ଼ି ନାଅ କାଲିରେଇ
ଏ ଦେହର ଗୀତା ।
କେତେବେଳେ ଫେଣ ଉଠେ
ଦେହ ସାଗରରେ
କେତେବେଳେ ନାଆଟେଳେ
ମନ ବନ୍ଦରରେ
ଚୁପ୍‌ଚାପ କଥା ପୁଣି
ଚୁପି ଚୁପି ହସ
ତୁମେ କି ଗୋ ପାଳିଥିଲ
ମନର ସାରସ ।

ଏକ ଫୁଲ ସେ କି ଫୁଲ
ମୋ ମନର ଫୁଲ
କାନ୍ଦନା ଲୋ କଲରେଇ
ଢଶେ ମାଳ ଘର ।

ଏ ଘରର ପାହାଚରେ
କ୍ଲାନ୍ତି ଆଉ ଖରା
ସବୁ ସ୍ୱପ୍ନ ସବୁ ମିଛ
ଖାଲି ମାଳ ତାରା ।

ତୁମେ ଆଖି ତୁମେ ଦେହ
ତୁମେ ନୂଆ ଜହ୍ନ
ହେମନ୍ତର ମଉଛବ
ଏ ଦେହର ଗାନ
ସମୟର ବାଳକୁଦେ
ଯୋଇ ଯୋଇ ଖେଳ
ମନେ ନାହିଁ କେତେ ଦିନୁ
ଦେହ ଚଇତାଳ ।

ଏ କି ଫୁଲ ସେ କି ଫୁଲ
ମୋ ଆଖିର ଫୁଲ
ଶୁଏ, ଚୁହେଁ, ହସେ, କାନ୍ଦେ
ଧୂଳିଆ ଧୂସର ।

# ମୋ କଥା

ମୋ କଥାଟି ସରଳ ଲୋ
ଫୁଲ ଗଛଟି ମରଳ ।

ହଜିଗଲା ଜୀବନର
କେତେ ହସ କେତେ ଫୁଲ
ଆମ ସ୍ମୃତି ଫରୁଆର
କେତେ କାନ୍ଦ କେତେ ଦୋଳ
ଚୁପ୍ ଚୁପ୍ ହୋଇଲା ଲୋ
ମୋ କଥାଟି ସରଳ ।

ଏ ଦେହର ଆକାଶରେ
ହେମନ୍ତର ମଉଛବ
ଅନାଗତ ବସନ୍ତର
ପ୍ରଜାପତି ଆଉ ରଙ୍ଗ
ସବୁ ହେଲା ଶୂନ ଶାନ
ଏ ପାହାଡ଼ ଫିକା ରଙ୍ଗ

ମାଡ଼ି ଯଦି ଆସିଲା ଲୋ
କେତେ ଲୁହ ଗଡ଼ିଲା ।
ମୋ ମନର ବଗିଚାରେ
ଯଦି ଫୁଟେ ଗୋଡ଼ିବାଣ
ଯଦି ବା ପଲାସ କହେ
ଏତେ ଦେହ, ଏତେ ମନ
କେଉଁଠି ମୋ ହଜିଲା ଲୋ
ଫୁଲ ଗଛଟି ମରିଲା ।

ସୁନାର ଏ ସକାଳରେ
ଗୋଧୂଳିର ଡାକ ଦେଇ
ଯଦି ବା ନାଉରୀ ଆସେ
ଏ ଦେହର ନାଆ ବାହି,
ହଜେ ମନ, ହଜେ ଜହ୍ନ,
ମୋ ମନର ବଂଶୀ ସ୍ୱନ
ସବୁ କଥା ଶୁଭିଲା ଲୋ
ଫୁଲ ଗଛଟି ମରିଲା ।

ମୋ ଦେହର ଇନ୍ଦ୍ରଧନୁ
ଯଦି କେବେ ଫିକା ପଡ଼େ
ଯଦି ଆମ୍ ମନ ତଳେ
ତାର ଆଉ ଜହ୍ନ ବୁଡ଼େ
ମୋ କଥାଟି ସରିଲା ଲୋ
କାହା ଫୁଲଟି ହଜିଲା ।

କେତେ ଅଶ୍ରୁ କେତେ ଫୁଲ
ନୂଆ ମନ, ନୂଆ ଖେଳ
କିଏ ଆଜି କରିଲା ଲୋ
କାହା ଫୁଲଟି ମରିଲା ?

●

# ଶଙ୍ଖଚିଲ

ତୁମେ ହୁଅ ଯଦି
    ଗୋଟିଏ ବନର ଫୁଲ
ଆକାଶରେ ଆମ
    ଉଡ଼ିବୁଲେ ଶଙ୍ଖଚିଲ ।

ଅଳସ ଦେହରେ
    ମଧୁ ଚଇତାଳି ଡାକି
ଉଡ଼ିଗଲା ଯଦି
    ବନ ଗହନର ପକ୍ଷୀ ।

ମନ ପକ୍ଷୀ ମୋର
    ସ୍ୱପନେ ଝୁଲାଏ ବସି
ମାଳ କବରୀରେ
    କେତେ ଫୁଲ ଦେଇ ଖୋସି ।

ମେଘ ଓ କଦମ୍ବ
ଦେହରେ ଯମୁନା ନଈ
ସ୍ମୃତି ବିସ୍ମୃତିର
ବାଲୁକା ମୁହାଁଣ ଡେଇଁ ।

ତୁମେ ହୁଅ ଯଦି
ଗୋଟିଏ ନଈର ଧାର
ଚେତନା ବନରେ
ହାଇ ମାରେ ଶଙ୍ଖଚିଲ ।



# ମନର ପାରି

ଘୁମୁ ଘୁମୁ ଘୁମୁରେ ପାରି
ବିଲବନ ପାହାଡ଼ ସାରି
ଦେହ ମୋର ପାଲଟେ କାରି
ହେଜେ ଯଦି ମନର ତାରି ।

ସଜଫୁଟା ଆକାଶୀ ଜହ୍ନ
ହସ ହସ କଅଁଳ ମନ
ଭୟେ ଯଦି ହୁଏ ଉଚ୍ଛନ୍ନ
ତୁମେ ମୋର ବସନ୍ତ ଜହ୍ନ ।

ଜହ୍ନି ଫୁଲେ ହସର ନଈ
ଓଠ ତଳେ ଟିକିଏ ବହି
ସରିଗଲା ଜୀବନ ଛଇ
ପାରିମୋର ଘୁମୁରେ ରହି ।

# ସଂଶଢ୍

ଟିକି ତାରଟି ଲୋ ଟିକି ତାରଟି
ଧଞ୍ଜ ସକାଳର ସାନ ତାରଟି
ଗହ ଗହ ହସି ଚେତନା ବନେ
ହଜିଲା ବେଳାର କଉଡ଼ି ଗଣେ ।

ବାଘ ଓ ମିରିଗ ଦେହରେ ଦେଖି
ଖରା ଓ ତରାର ହଳଦୀ ମାଖି
ଢୁଲାଇ ପଡ଼ଇ ପାହାନ୍ତ ନଦେ
ଢେଉ ଉଠେ ଯେବେ ମନର ହ୍ରଦେ ।

ଗ୍ରୁଣ୍ଠ ଗ୍ରୁଣ୍ଠ ହାତେ ସାଉଁରା ହୋଇ
ହେମାଳ ପବନୁ ମହକ ନେଇ
ଖସିପଡ଼େ ଯଦି ମନର ଫୁଲ
କେଉଁଠି ଫଗୁଣ କେଉଁଠି ଦୋଳ ?

# ଚୃହାଲୀ

ଜହ୍ନି ଫୁଲ ଠୋ ଲେ
କାକୁଡ଼ି ଫୁଲ ଠା
ମନ ଯଦ୍ଧ ଭାଙ୍ଗିଯାଏ
ଜହ୍ନ ଦେଖୁ ଥା ଲେ
ତାର ଗଣୁଥା ।

ହସ ହସ ମନ ମେଘେ
ଧଳା ଧଳା ଚଉଁଘି
ଦେହ ଯଦ୍ଧ ଭରି ଲଗେ
ରଚ ଚକା ଭଉଁଘି ଲେ
ଯାଅ ଟିକେ ପହଁର ।

କଡ଼ା ଗଣ୍ଡା ପଣିକିଆ
ଏ ଜୀବନ ହିସାବ
ଏକ ତାର, ଦୁଇ ତାର
ଫୁଲଗଛ ମରିବ ଲେ
ଖେଳ ଯଦ୍ଧ ସରିବ ।

ହସି ହସି 'ଶୂନ' ନେବା
ଏ ଜୀବନେ ମୂଲାଇ
ଲେଉଟାଣି ଫୁଲ ଗନ୍ଧ
ପଢ଼େ ଯଦି ତୁଳାଇଲେ
କାହିଁ ମନ-ଦୁଲ୍କେଇ ।

'ମନହ୍ରଦେ ନୀଳପାଣି
ସାତତାଳ ଗମ୍ଭୀର
ସାହାଡ଼ା କାଠିର ଡଙ୍ଗା
କିଏ ନେଲ୍ ଏଥର ଲୋ
ଝୁଟରେ ଭୁଠ ପଥର ।

ଜହ୍ନି ଫୁଲ ଠୋ ଲୋ
କାକୁଡ଼ି ଫୁଲ ଠା
ମନ ଯଦି ମରିଯାଏ
ବେଳ ଦେଖୁ ଥା ଲୋ
ଡାଳ ଗଣୁ ଥା ।

ମଣିଷର ସୁଖ ଦୁଃଖ
ଜୀବନର ସଉଦା
ମନ ଯଦି ଫୁଲ ଉଠେ
ସବୁ ହୁଏ ମଉଦା ଲୋ
ସେତେ ସୁଖ ଶରଧା ।

ଫୁଲପରି କଅଁଳିଆ
ପାଣିପରି ତରଳ
ଏ ଜୀବନେ ହସକାନ୍ଦ
କେତକାର ମହଲ ଲୋ
ଆନନ୍ଦର ଚହଲ ।

ଖଗ ସଙ୍ଗେ ଉଡ଼ି ଯଦ
ଏ ଦେହର ଭୂଷଣ
ସ୍ୱପନରେ ଝିଲମିଲ
ଦୁଃଖରେ ଖିଲଖିଲ
ଯଦ ଆମ ନୟନ ଲେ
କାହିଁ ନୂଆ ଭୁବନ ?



# ବିସ୍ମୃତି

ଏକ ତାରା ଦୁଇ ତାରା
ଲମ୍ବ ଗଛରେ ଖଟଣି ଘୋଡ଼ା
ଦେ'ରେ ଧରି, ଆକାଶ ତାରା ।

ଫୁଲ ଫୁଟା ଦେହତଳେ
ହଜେ ଯଦି ପରାଗ
ଲୁଟେ ଯଦି ଆମ ହସ
ମନ ଭୁଲ ସରାଗ ।

ଏକ ତାରା, ଦୁଇ ତାରା
ଗଣ ସଖି ଗଣ ଗୋ
ପିଞ୍ଜରାର ପକ୍ଷୀଟିରେ
ଡାକି ଥରେ ଧର ଗୋ ।

କେତେବେଳେ ମାଲାକାଶେ
ମଉଳବ ଜୋଛନା

କେତେବେଳେ ଝରିଯିବ
ଆଖିତଳ ଝରଣା ।

ମନ ମାର ହାତଧର
ଲୁଚକାଳି ଖେଳରେ
ଘରେ ଯଦ ଧୂଳିଘର
କଲେଇ ଫୁଲରେ

ଅଉଥରେ ଭଲକରି
କର ଆଗୋ ଭିଆଣ
ଧୂଳିର ଜୀବନ ଏ ଯେ
ଆମ ନୂଆ ପୁରାଣ ।

ଠିକ ଠିକ ହାଡ ଯେବେ
ଘୋଳାଇବ ସଜନୀ
ସରିଯିବ ହସଖେଳ
କଉତୁକ ରଜନୀ ।

ସେତେବେଳେ ଫରୁଆରୁ
ଆଣି ନୂଆ ସିନ୍ଦୂର
ବୋଲ ଲୋ ହେଲଣି ଆସି
କୁନ କୁନ ସକାଳ ।

# ଝୁଲାରେ ହାତି

ଝୁଲ୍‌ରେ ହାତୀ, ଝୁଲ
ବାଆ ପାଣି ଖାଇ
ଫୁଲରେ ହାତୀ ଫୁଲ ।

ଦେବ ମୁଁ ରେ ଟିକଫୁଲ
ଦେବ ମୁଁ ରେ କଣ୍ଢେଇ
ଧୂଳି ଘର ହାତୀ ମୋର
ଯାଆ ନା'ରେ ଭଣ୍ଡେଇ ।

କାକର ଓ ପଣ୍ଡ୍ରୁମାଖି
ଜଅଁଳିଆ ସକାଳ
ହଳଦୀ ପାଣିରେ କରେ
ଗୋଟା ଦେହ ପଖାଳ ।

ଅରୁଆ ମରୁଆ ପୁଣି
ରଜାଘର ଫରୁଆ
ଆକାଶ ବେଘରେ ଥୋଇ
କାହିଁ ଗଲ ଘରୁଆ ?

କଲରେଇ ଫୁଲ ମୋର
ହଜିଗଲ କେଉଁଠି
ମନହାଣ୍ଡି ବୁଢ଼ାହୁଏ
ହସେ, କାନ୍ଦେ, ଲେଉଟି ।



# ରାତି

ଘୂମୁ ଘୂମୁ ଅନ୍ଧାରରେ
କଳା କଳା ବଉଦ
ବାଜ ମୋର ପେଁକାଳ
ବାଜ ମୋର ବାଇଦ ।

ରୂପାର ମିରଗ ମୋର
ଲେଉଟାଣି ଘାଟରେ
ପାଣି ପିଇ ପାଢ଼ି ମାର
ଆସେ ନଭ ଭୂଟରେ ।

କାନ୍ଦ କାନ୍ଦ ଜଗୁଆଳ
ବାହୁଁଡ଼େ ତା ଘରକୁ
ମୈତ ତ ପଢ଼ୁଆ ହୁଏ
କଏ କହେ କାହାକୁ !

ମନ ଡଳେ ଘନ ବନେ
ବାହୁନେ କା କପୋତ
ରାତ୍ତ ପଦ୍ମ ଫୁଲ ଧରେ
ଗୃଟଲ ତୁମ ବୋଇତ ।

ଟିପି ଟିପି ପାଦଚପି
ଆସେ ପଦ୍ମ କୁମାରୀ
କଳାଝିମି ପାଟପିନ୍ଧି
ଅଙ୍ଗ ଦେଇ ଆଟବାନ୍ତ୍ର ।

ଉତ୍କଳା ନଈର କୋଳେ
କେଉଁ ଢୋଡ ମୁହାଁଣେ
ଲୁଚିଗଲ ତୁମେ ସତେ
ଏ ଦୁନିଆଁ ଜାହାଁଣେ ।

ସବୁତ ଓଲଟି ପଡ଼େ
ଓ ଲଠେନ ଜୀବନ
ରାତ୍ତ ପଦ୍ମ ଫୁଲ ଧରେ
ଦଶେ ତୁମ ନୟନ ।



# ବୈଶାଖର ସୂର୍ଯ୍ୟ

ସକାଳର ଆକାଶରେ
ଲେଣ୍ଠଣ ପାରା
ହଳଦିରେ ଗରଗର
ଦେହଟା ସାରା ।
ଲେପି ଦେଲା ଆମ ଦେହେ
ବନର ହଳଦି ପରି
ପାଣିଆ ଖରା ।

ଦ୍ୱିପ୍ରହର ଆକାଶରେ
ଲେଣ୍ଠଣି ପାରା
ଫଡ଼୍ ଫଡ଼୍ ଡେଣାପିଟି
ଅଗଣା ସାରା
ନିଆଁ ଫୁଲ ଆଣି ଯେତେ
ଫୋପାଡ଼ୁଥିଲା ।

ସନ୍ଧ୍ୟାବେଳେ ପୁଣି ସେହି
ଲେଉଟିଣି ପାରି
ରୁଧିର ପୋଷାକ ପିନ୍ଧି
ଘୂମାଉ ଥିଲି
ମୋ ଦେହର ରଙ୍ଗସେତିକି
ଡାହାଣୀ ଖରି ।



# କଟକ ସହର

ମେଘ ଓ ମୟୂର
  ମୋ ଗାଆଁର କାକ ଜ୍ୟୋତ୍ସ୍ନା
    କଦମ୍ବ କେଶର ।

ମୋତେ ସବୁ ଡାକୁଥିଲେ
  ସହର ଗଳିରେ
ମୋତେ ସବୁ ପ୍ରଶ୍ନ କଲେ
  ଗୋଲେଇ ଛକରେ;

ମୋ ଚକ୍ଷୁର ଲୁହ ହେଲା
  ବରଷାର ଧାର
ମୋ ଚେତନା ପାଲଟିଲା
  ପାହାନ୍ତିଆ ତାର ।

ମୁଁ କହିଲି ହେ ମୟୂର
  ତୁମେ ଥରେ ନାଚ
ମୁଁ କହିଲି ରେ କଦମ୍ବ
  ଆଉ ଥରେ ହସ ।

ମୋ କଥାରେ କାନ୍ଦୁଥିଲା
କଟକ ନଗର
ଡ୍ରେନ ପାଇପ୍ ଫାଟିଗିଲା
କାଠଯୋଡ଼ କୂଳ ।

ମୁଁ ଡାକିଲି ହେ ଅଳକା
ହେ ପ୍ରତିମା ଆସ
କୋଣାର୍କର ଲାସ୍ୟଲୀଳା
'ଶୋ' ହେଲା ଶେଷ ।

ସେ ଡାକରେ ହସୁଥିଲି
ଅବୋଧ ପବନ
ସହରର ଧୂଆଁ ମାଖି
ଆକାଶର ଜହ୍ନ ।

କାନ୍ଦୁଥିଲି ମହାନଦୀ
ନଗ୍ନେଲା ପଠାରେ
କାଶତଣ୍ଡୀ ଶେଫାଳି ବା
ଧାନ କଅାଁଶରେ ।

ସେତେବେଳେ ମନେପଡ଼େ
କଟକ ନଗର
ତ୍ରିଭଙ୍ଗୀ ଠାଣିର ନାଚ
ବାଲି ଯାତ୍ରା ଭିଡ଼ ।

ମୋ ଆଖିରେ ଫୁଟାଇଛି
ଅସଂଖ୍ୟ ଟଗର
ସଖି ତଡ଼ୁଥି ଖାନନଦୀ
ଆବା ସ୍ୱର୍ଗଦ୍ୱାର ।

ପୁଣି କେବେ ବଳୀଦତ୍ତ
　　ସତରଞ୍ଜ ଖେଳେ
ବତାଇଛୁ ଗ୍ରନ୍ଥ ଗ୍ରନ୍ଥ
　　ମାଲ୍ ଗୋଦାମରେ ।

ଆସିଥିଲ କେବେ ପୁଣି
　　ପିଙ୍ଗଳା ନାୟକ
ଆଖିରେ ଆଖିରେ ଫିଙ୍ଗି
　　ଅଗନୁ ଶାୟକ ।

ବକୁଥିଲ ମଲ୍ଲୀ ଦ୍ୱାର
　　କଲେଜ ଛକରେ
ଦିଶାସ୍ମା ଯାମିନୀ ଅବା
　　ଦିନ ଦ୍ୱିପ୍ରହରେ ।

ଶୁଣ ସବୁ ଦୋସ୍ତ ମୋର
　　କଲେଜ କାଳର
ଶୋଇ ପୁଣି ସ୍ୱପ୍ନ ଦେଖେ
　　କଟକ ସହର ।

ଉଜ୍ଜୟିନୀ ଶ୍ରାବସ୍ତିବା
　　ହସ୍ତିନା ନଗର
ବସନ୍ତର ମଉଛବ
　　ଅନନ୍ତ କାଳର ।

ସବୁଧର ଠିଆହୁଏ
　　ପୁଣି ଯେତେବେଳେ
ସମସ୍ତୁ ଅନାଇ ରହେ
　　ବ୍ରୀଡାନତ ଡୋଳେ ।

ହେ କଟକ ବର୍ଣ୍ଣଭରା
ଭୁମର ଛଟକ
ଆଖିରେ ବଜୁଳି ଏବଂ
ହସର ଚମ୍ପକ ।

ହଜଯାଏ ପୁଣି କେବେ
କାଠଯୋଡ଼ି କୂଳେ
ରାମ ରଥ ରିକ୍ସା ଟାଣେ
ସଦର ରାସ୍ତାରେ ।

ମୋ ମନରେ ବଞ୍ଚି ରହେ
କଟକ ସହର
ବ୍ରୌପଦୀର ଶାଢ଼ୀ ପରି
ଲକ୍ଷ ପରସ୍ତର ।

କେବେ ଅବା ଖଣ୍ଡ ଖଣ୍ଡ
ଧଳା ମେଘ ପରି
କେବେ ଅବା ହ୍ରମାବୃତ୍ତ
ପଉଷ ଶର୍ବରୀ ।

ପରି ମୋତେ ଦେଖା ଦେଲେ
ମୋ ନଈ ପଠାରେ
କାଚ କେନ୍ଦୁ ଜଳ ଏବଂ
ପଦ୍ମ ପୋଖରୀରେ ।

ମୁଁ କାଟିଲି ବାରବର୍ଷ
ଅଜ୍ଞାତ ବାସରେ
କେନ୍ଦୁଝରୁ ଢେଙ୍କାନାଳ
ଯାବା କର୍ଣ୍ଣରେ ।

ପୁଅ ମୋର ପଢ଼ୁଅଛି
ପାଞ୍ଚ ବରଷର
ବର୍ଣ୍ଣବୋଧେ ଲେଖା ଯେଉଁ
ପ୍ରଖ୍ୟାତ ସହର ।

ସେଠାରେ ଫୁଟେ କି ଏବେ
ଧବଳ ଟଗର
ଆମେ କେବେ ଯିବା ବାପା
କଟକ ନଗର ।



୨

## ହଂସପ୍ରତି

କୁମାସ୍ତ ମନେ ବହୁରଇ
ସଙ୍ଗ ଗନ୍ଧଲେ ନାଶ ଯାଇ
ରେଳ ମୂଷଲ ଏକ କର
କୁଠଇ ବେନ କରେ ଧର—ଭାଗବତ ।

ସୁନାର ବୋଇତ ଏବଂ
ମୋ ଆଖିର [illegible]
ମୋ ଦେହରେ ଯଦ୍ୱ ଉଦ୍ବୋଳ
ଫଗୁଣର ହ୍ନ ।

ମୁଁ ବସିଲି ବାଟ କାଳି
  ସମସ୍ତ ଦୁଆର
ମୋ ଦେହେ ଓଭରକୋଟ
  ଆଉ ମଲ୍ଲୀହାର ।

ସବୁ ମୁଁ ଉଡ଼ାଇ ଦିଏ
  ସମୁଦ୍ର ହାଓ୍ୱାରେ
ସମସ୍ତର ରାଜହଂସ
  ମୋ ହାତ ମୁଠାରେ ।

ମୁଁ ଡାକୁଛି ହେ ବୈଦେହି
  ହେ ସୁଭଦ୍ରା ଆସ
ମୋ ଦେହରେ ଶୋଷ ଏବଂ
  ସମସ୍ତର ହସ ।

ମୋ ହାତେ ଶେଳ ମୁଷଳ
  ମୋ ଆଖିରେ ଖର
ମୋ ବେଣୀରେ ଚମ୍ପାଫୁଲ
  କଦମ୍ବ କେଶର ।

ମୋ କଙ୍କଣ ରୁଣଝୁଣ
  କାଳ କାଳାନ୍ତର
ମୁଁ ମଙ୍ଗ[illegible]ୀ ରାଜାଝିଅ
  ଅ[illegible]ୟ କୋଠରିର ।

ମୁଁ ବଢ଼ିଛି ବାପଘରେ
ଚାନ୍ଦ ଗଣି ଗଣି
ମୋ ଆଖିରେ କେତେ ଫୁଲ
ତାରାର ରୋଷଣି ।

ବାପା ମୋର କାନ୍ଦୁଛନ୍ତ
କନକ ବେଘାରେ
ମୁଁ ବାଟ ବଣୁଣୀ ଝିଅ
ମୋ ବଉ କୋଳରେ

ମୁଁ ଦେଖିଲ କେତେ ସ୍ୱପ୍ନ
ଫୁଲ ଫୁଟା ବେଳେ
ମୋ ବଉ ବ ପାଳଭୂତ
ଆଖୁ କଅଁଆସରେ ।

ମୋ ଟିକ ଭଉଣୀ କୁନି
ହସେ ଖିଲ ଖିଲ
ବନର ଝରଣା ସମ
ତା ଦେହେ ବଜୁଳି

ନାଚୁଥିଲ ଆମଘର
ବାଡ଼ ଅନ୍ଧାରରେ
ବେ ପରୁଆ ଘର ମୋର
କଟକ ହଂରେ ।

ଦେଖୁଥିଲେ ଖଞ୍ଜନାଚ
ସଦର ରାସ୍ତାରେ
ଓସ୍ତଗଛେ ବାହୁଡ଼ି ଓ
କାଉଙ୍କ ମେଳରେ ।

ବୋଉ ମୋର ପାଲଟିଲା
ସତେକ କୁରଙ୍ଗୀ
ଚିତା ଲେଖି ପାଦ ଥାପି
ପଦ୍ମ ପଦେ ଦ୍ୱେର ।

ଡାକୁଥିଲା ଫେରିଆରେ
ଏକୋଇର ବଳା
ଅନ୍ଧର ଲଉଡ଼ି ମୋର
ନୟନ ପସରା ।

ପୂରନ ରଙ୍କୁଣୀ ଥାଳ
ରେ କୁମରମଣି
ଖତ କୁଢ଼େ ଫୁଟିଲଣି
ଅସଂଖ୍ୟ ରଙ୍ଗିଣୀ ।

ମୋ ହାତେ ରେଳ ମୁଷଳ
ମୋ ଆଖିରେ ଖାର
ହସକୁ ମୋ କଙ୍କିଣୀ
ବଣ୍ୟବଖାର ।

କଣ୍ଢେଇ ଖେଳଙ୍କ ଆଉ
ହଂସତୂଳୀ ଶେଯରେ
ସମସ୍ତ ପଡ଼ିଲି ଶୋଇ
ସଦା ମୋ କୋଳରେ ।

ବଉ ମୋତେ କହୁଥିଲା
ବିବାହ ବୟସୀ
ଲବଣ ଗୁଣ୍ଡିଏ ହାତୁ
ପଡ଼ୁଥିଲା ଖସି ।

ହତ୍‌ବାକ ମୋ ଅଗଣା
ଶୂନ୍ୟ ମୋ କୋଠରି
ବଗିଚୁରେ ଫୁଲ ଏବଂ
ପ୍ରଜାପତି ସ୍ୱର ।

ମୁଁ କାନ୍ଦିଲି ଅର୍କକ୍ଷେତ୍ରେ
ଭଗ୍ନ ଦେଉଳରେ
ଅଜସ୍ର ବୋଇତ ଲଗେ
ମୋ ଗାଆଁ ତୁଠରେ ।

ତଥାପି ମୁଁ ଅଭିଆଡ଼ୀ
ସଦା ଜନ୍ମ ପାଇଁ
ମୋ ହାତୁ ରେଳା [illegible]ସଲ
ସଦା ଖା[illegible] ନାଇଁ ।

ବୋଉ ମୋର ଗନ୍ଧେ ପଦ୍ମ
ଏରୁଣ୍ଡି ବନ୍ଧରେ
ବୈଶାଖର ଖରା ଏବଂ
ଶୀତ ସକାଳରେ ।

ପରୁଛିଲ ହଂସ ଆରେ
କାହିଁ ତୋର ଗ୍ରାମ
କେତେ ଦୂରେ ଯାବା ପୁଣି
କେଉଁଠି ବିଶ୍ରାମ ?

